| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୨ । ଚୈତ୍ର-ବୈଶାଖ | ମେଷ | (୨) ଦ୍ୱିଜା (ଭରଣୀ, ଯମ) ତିନୋଟି ତାରକା । ଏହି ତିନୋଟି ତାରକାକୁ ଯୋଗକଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ । ଏହି ତାରା ଉତ୍ତର ଆକାଶରେ ଅଶ୍ୱିନୀର ପଶ୍ଚିମରେ ଥାଏ । | ଏପ୍ରିଲ ୨୭ରୁ ମଇ ୯ ତାରିଖ ଗଞ୍ଜାମ ଜିଲ୍ଲାର ଆସିକା ଅଞ୍ଚଳରେ ଗଣ୍ଡା ଆଖୁ ଲଗା ଆରମ୍ଭ, କଟକ ଜିଲ୍ଲାରେ ମଧୁର ନଳିତା ବୁଣା ଆରମ୍ଭ, ଗୋବର ଖାତରୁ ଖତ ବାହାର କରି ଶୁଖାଇବା । ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା ଦିନ କୃଷୀ "ଅକ୍ଷୟ-ମୁଷ୍ଟି" ବା "ଅକ୍ଷି-ମୁଠି" ପକାଏ । ଏହି ଦିନଠାରୁ ଶସ୍ୟ ବୁଣାବୁଣି ଆରମ୍ଭ କରୁ ଚୈତ୍ର ମାସରେ ବର୍ଷା ହେଲେ ଏବଂ ପରେ ବର୍ଷା ଛିନ୍ନ ଗୁଣ୍ଡିଆ ହେବାର ଆଶଙ୍କା ଥିଲେ କୃଷୀ |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | | ଅକ୍ଷୟ-ତୃତୀୟା ପୂର୍ବରୁ ଧାନବୁଣା ଆରମ୍ଭ କରେ । ବୈଶାଖ ମାସରେ ଗୁଡ଼ାଏ ବର୍ଷା ହେଲେ ଖାଲ ଓ ପାଟଜମି ପାଣିରେ ବୁଡ଼ିଯିବା ଆଶଙ୍କା ରହିଥାଏ । ତେଣୁ କୃଷୀ ଅକ୍ଷୟ ତୃତୀୟା ପୂର୍ବରୁ ଏହି ଜମିରେ ଧାନ ବୁଣେ ବା ପୁଞ୍ଜି ପକାଏ । ଏହାକୁ "ଅଣତୃତୀୟା" ବୁଣା କୁହା-ଯାଏ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୨ । ବୈଶାଖ-ଜ୍ୟେଷ୍ଠ | ବୃଷ | (୩) କୃତ୍ତିକା ( ମାତୃମଣ୍ଡଳ ବହୁଳା ବା ଅନଳ) ମେଷରେ ୧/୪, ବୃଷରେ ୩/୪, ଏହା ଛଅଟି ତାରା ବିଶିଷ୍ଟ । ଏଗୁଡ଼ିକୁ ଯୋଗକଲେ ଗୋଟିଏ କାଠ ମୁଗୁର ହେବ । ଏଥିଲାଗି ସମ୍ବଲପୁରୀ ଭାଷାରେ ଏହାକୁ "କାଠଲ ତାରା" କୁହାଯାଏ । ଏହା ପ୍ରାୟ ଅଗ୍ନିଶିଖା ଭୁଲ୍ୟ ପାଶ୍ଚାତ୍ୟ ଶାସ୍ତ୍ରରେ ଏହି ତାରା ସହିତ ଆଉ ଗୋଟିଏ ତାରା ମିଶାଇ ୭ଟି ତାରା ଗଣନ୍ତି । ପୁରାଣ ମତରେ ବଶିଷ୍ଠଙ୍କ ପତ୍ନୀ ଅରୁନ୍ଧତୀଙ୍କ ଛଡ଼ା ଏମାନେ | ମଇ ୧୦ ତାରିଖରୁ ୨୩ ତାରିଖ କୋରାପୁଟ ଜିଲ୍ଲାରେ ଗେଡ଼ା ଜମିରେ ଧାନବୁଣା ଆରମ୍ଭ । ମାଣ୍ଡିଆ ଚାଷ ପକାଯିବା, ହାଲକା ଖସା ଉପଡ଼ା ଓ ଖରାଟିଆ ମାଣ୍ଡିଆ କଟା, ନଳିତା ଘାସ ବଗୁବଛା; କଖାରୁ, ପାଣି କଖାରୁ, ଶିମ୍ବ, ଛଞ୍ଚୁଆ, ଜହ୍ନି କାକୁଡ଼ି, କୁନ୍ଦୁରୁ ଲଗା । ସାବିତ୍ରୀ ଅମାବସ୍ୟା ପର୍ବ ପ୍ରବାଦ ଅଛି — "ସାବିତ୍ରୀ ଅମାବାସ୍ୟାକୁ ଶାଗମଞ୍ଜି ଘରେ ରହେ ନାହିଁ ॥" |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | ଅନ୍ୟ ୬ଜଣ ଋଷିପତ୍ନୀ ଅଛନ୍ତି । ଏହି ଛଅ ଜଣ କାର୍ତ୍ତିକେୟଙ୍କୁ ଛଅ ମୁଖରେ ସ୍ତନ୍ୟପାନ କରାଇ ଥିଲେ । କାର୍ତ୍ତିକ ପୂର୍ଣ୍ଣିମାରେ ଚନ୍ଦ୍ର ଏହି କୃତ୍ତିକାପୁଞ୍ଜ ସଙ୍ଗେ ରହନ୍ତି । | "କ ଗୁହ୍ଣରେ ଚଷା । ନଷ୍ଟ ! ଏକ ଅମ୍ବରକେ ହେବ ଜ୍ୟେଷ୍ଠ ଧାନବୁଣ, ଧାନ ବୁଣ, ନକର ମଠ ॥" |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୨। ବୈଶାଖ-ଜ୍ୟେଷ୍ଠ | ବୃଷ | (୪) ରୋହିଣୀ (ରୋହିତ ତାରା) ବୃଷରେ ଅବସ୍ଥିତ ଏହା ୫ଟି ତାରା ବିଶିଷ୍ଟ, ଏଗୁଡିକୁ ଯୋଗ କଲେ ଗୋଟିଏ ଶଗଡ଼ ଦଣ୍ଡାର ଆକାର ହୁଏ। ଏହି ଶଗଡ଼ ଦଣ୍ଡାର ଡାହାଣ ପାଖ ତଳତାରା ବଡ଼ ଉଜ୍ଜ୍ୱଳ ଓ ହଳଦିଆ। ପାଶ୍ଚାତ୍ୟ ଦେଶରେ ଏହାର ନାମ "ଆଲ୍‌-ଡେବେରନ"(Aldeberan)। ଚନ୍ଦ୍ର ରୋହିଣୀ ଶକଟକୁ ଭେଦ କଲେ ଦେଶରେ ଅନିଷ୍ଟ ଆଶଙ୍କା ରହେ। | ମଇ ୨୪ ତାରିଖରୁ ଜୁନ ୭ ତାରିଖ ବର୍ଷର ନିରଟ ଖରା ସମୟ। ମଧ୍ୟାହ୍ନ ଉତ୍ତାପ ୧୧୦-୧୧୭° ଡିଗ୍ରୀ ଫାରେନ୍‌ହାଇଟ୍‌ ପର୍ଯ୍ୟନ୍ତ ଯାଏ।<br>"ହୁତାଶନ ସମ ତପନ ତାପରେ<br>ତପ୍ତ ମହୀ କଳେବର<br>ତପ୍ତ ଧୂଳିରାଶି ତପତ ଅନିଳେ<br>ଉଡ଼ ଘୋଟଇ ଅମ୍ବର"।<br>—ମଧୁସୂଦନ<br>ରୋହିଣୀ ନକ୍ଷତ୍ର ମଧ୍ୟରେ ସାବିତ୍ରୀ ଅମାବାସ୍ୟା ପଡ଼େ। ଆମ୍ବ, ପଣସ, ସପୁରି ପାଚେ।<br>ରୋହିଣୀ ନକ୍ଷତ୍ର ଶେଷ ପାଦରେ ସମ୍ବଲପୁର, ବଲାଙ୍ଗିର ଓ |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | | ସୁନ୍ଦରଗଡ଼ ଜଲରେ "ଶୀତଲ-ଷଷ୍ଠୀ" ପର୍ବ ପଡ଼େ । ଏହି ପର୍ବ ପରେ ପରେ ଅସରା ଏ ଦୁଇ ଅସରା ବର୍ଷା ପଡ଼େ ।<br>ଧାନ ଖରୁଡ଼ ବୁଣା ଆରମ୍ଭ ।<br>ପ୍ରବାଦ ଅଛି—<br>"ଯଦ୍ଧ ଦେଖିବ ରୋହିଣୀ ଗଜା<br>ତେବେ କ କରିବ ଦେଶର ରଜା ॥" |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୩। ଜ୍ୟେଷ୍ଠ-ଆଷାଢ଼ | | (୫) ମୃଗଶିରା<br>ବୃଷରେ ୧/୨, ମିଥୁନରେ ୧/୨<br>ଅବସ୍ଥିତ । ଏହା ଉତ୍ତର<br>ଆକାଶରେ ଥାଏ । ୩ଟି ତାରା<br>ବିଶିଷ୍ଟ, ଏଗୁଡ଼ିକୁ ଯୋଗକଲେ<br>ଗୋଟିଏ ସୂକ୍ଷ୍ମକୋଣୀ ତ୍ରିଭୁଜ<br>ହୁଏ । ଏହାକୁ ହରିଣ ପାଦ<br>ଆକୃତି ବା ହରିଣମୁଣ୍ଡିଆ<br>ତାରାପୁଞ୍ଜ କୁହାଯାଏ । କେହି<br>କେହି ଏହାକୁ କାଳପୁରୁଷ ମୁଣ୍ଡ<br>କହିଥାନ୍ତି ।<br>ମାର୍ଗଶିର ମାସ ପୂର୍ଣ୍ଣିମାରେ ଚନ୍ଦ୍ର<br>ଏହି ନକ୍ଷତ୍ର ସହ ରହିଥାନ୍ତି । | ଜୁନ ୭ ତାରିଖରୁ ୨୦ ତାରିଖ<br>ଖରିଫ ଫସଲ ବୁଣାବୁଣି ଆରମ୍ଭ ।<br>କୃଷୀ ପକ୍ଷରେ ବିଶ୍ରାମ ନେବା<br>ଅସମ୍ଭବ ହୋଇପଡ଼େ । ଝିଙ୍କାରି<br>ଝିନ୍ ଝିନ୍ ଡାକେ । ସକାଳ<br>କାଆଁ ଳିଆ ଧରେ । ଚଷା ବନ୍ଧନ<br>ବୁଜୁଳି ଫିଟାଏ । ଧନିଆ, ଝୁଣପଟ,<br>କାଉଁରିଆ ବୁଣାବୁଣି ଶେଷ ।<br>ଧାନ ଖରୁଡ଼ି ବୁଣା । ବର୍ଷା ପଡ଼ିଲେ<br>ବତୁରି ଧାନ ବୁଣା, କପା, ମକା,<br>ଜୁଆର, ହଳଦି ଲଗା କୋଶଳା,<br>ଜାଡ଼, ଗୁଳା ପ୍ରଭୃତି କ୍ଷୁଦ୍ର ଶସ୍ୟ<br>ବୁଣାବୁଣି ଶେଷ ।<br>ମୃଗଶିରା ନକ୍ଷତ୍ର ଶେଷ ଆଡ଼କୁ ରଜ ପର୍ବ । |



**ମୃଗଶିରା**

| ମାସ | ରାଶି | ନକ୍ଷତ୍ର | କୃଷକାର୍ଯ୍ୟ |
|---|---|---|---|
| |  **ଆର୍ଦ୍ରା** | (୬) ଆର୍ଦ୍ରା ବା ଶ୍ଳେଷ୍ମା ମିଥୁନ ରାଶିରେ ଅବସ୍ଥିତ । ଏହା ଗୋଟିଏ ହଳଦିଆ ଉଜ୍ଜ୍ୱଳ ତାରା । ଉତ୍ତର ଆକାଶରେ ମୃଗଶିରା ନକ୍ଷତ୍ର ଦକ୍ଷିଣ ପଶ୍ଚିମରେ ରହି-ଥାଏ । ତେଣୁ ଏହାକୁ କାଳ ପୁରୁଷର ଡାହାଣ ଖୁଆମୁଣ୍ଡ କୁହାଯାଏ । ଏହା ରକ୍ତାଭ । | ଜୁନ ୨୧ ତାରିଖରୁ ଜୁଲାଇ ୧ ଆଷାଢ଼ ଅମାବାସ୍ୟା ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଉଭାଯାତ୍ରା । ନେତ୍ର ଉତ୍ସବ ବା ଶ୍ରୀ ଗୁଣ୍ଡିଚ୍ଚା । କପା, ଚିନାବାଦାମ ଲଗା ଏବଂ ମକା ବୁଣା ଶେଷ । ପାହାଡ଼ ଆଳୁ ଲଗା ଆରମ୍ଭ, ଫୁଲ କୋବି ଲଗାଲଗି ଜମି ତିଆରି<br>ପ୍ରବାଦ:—<br>"ଆଷାଢ଼ ପାଞ୍ଚଦିନ<br>ଯେ ଚଷା ରୋଇବ ଧାନ<br>ଭୋଗିବ ଅପାର ସୁଖ<br>ନ ଛୁଇଁବ ତାରେ ଦୁଃଖ ॥<br>ସମସ୍ତ ଖରିଫ୍ ଫସଲ ବୁଣା ଶେଷ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୭) ପୁନର୍ବସୁ ବା ମୁରମାଡା ମିଥୁନରେ ¾, କର୍କଡ଼ାରେ ¼ ଉତ୍ତର ଆକାଶରୁ ଦକ୍ଷିଣ ଆକାଶ ପର୍ଯ୍ୟନ୍ତ ବିସ୍ତୃତ ଧନୁକ ଆକାରରେ ଅବସ୍ଥିତ ୭ଟି ତାରା । ଧନୁର ଦକ୍ଷିଣାର୍ଦ୍ଧ ଛାୟା ପଥକୁ କାଟୁଛି । ୭ଟି ତାରାଙ୍କ ନାମ—୧ ସୋମ, ୨—ବସ୍ତୁ, ୩—ପ୍ରତ୍ୟୁଷ, ୪—ଅଚମା ବା ଶ୍ୱା, ୫—(ନାମ ଜଣା ନାହିଁ) ୬—ପ୍ରଶ୍ୱା ବା ଲୁବ୍‌ଧକ; ଏହି ତାରା ଉଜ୍ଜଳତମ । | ଜୁଲାଇ ୨ତାରିଖରୁ ୧୫ତାରିଖ ହେବ ପଞ୍ଚମୀ, ବାହୁଡ଼ା ବଜପୂ, ଧାନ ବେଢ଼ଷଣ ଆରମ୍ଭ<br>ପ୍ରବାଦ:—<br>ଗୁଣ୍ଡିଚ୍ଚ ବାହୁଡ଼ା ମଧ୍ୟରେ ପାଣି ଗୋଡ଼ ଲଗଲକୁ ଖୋଜିବୁ ପୁଣି ।<br>ପାହାଡ଼ିଆ ଅଞ୍ଚଳରେ ଫୁଲକୋବ, ଓଲକୋବ ବଳନ୍ତ ବାଇଗଣ ଲଗା |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୪ । ଆଷାଢ଼—ଶ୍ରାବଣ | କର୍କଟ ବା କକଡ଼ା | (୮) ପୁଷ୍ୟା ବା ଗୁରୁ କକଡ଼ାରେ ଅବସ୍ଥିତ ଉତ୍ତର ଆକାଶରେ ତ୍ରିଭୁଜାକାର ତିନିଟି ତାରା । ପିଲ୍ଲ ଭୂମିରେ ଖଡ଼ିପାଠ ଲେଖି ଲଗାଇଥିବାପରି ଦେଖାଯାଏ । ତିନିଟି ତାରା ମଧ୍ୟଫେଣା ପରି ଦେଖାଯାନ୍ତି । ଏହା କକଡ଼ା ରାଶିରେ ଅବସ୍ଥିତ । ପୌଷ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । ଏହି ନକ୍ଷତ୍ର-ଯୁକ୍ତ ତିଥିରେ ଶ୍ୱେତ ପୁରୁଣି ମୂଳ ଖୋଳି ଆଣି ଘରେ ରଖିଲେ ସର୍ପ ଭୟ ନ ଥାଏ । | ଜୁଲାଇ ୧୭ ରୁ ୩୦ ତାରିଖ ଦେବ ଶୟନ ପୂର୍ଣ୍ଣିମା, ଜାଗୁଳାଇ ପଞ୍ଚମୀ । ଧାନ ବେଉଷଣ, ଧନିଆ ଓ ଛଣପଟ ସବୁଜ ସାର ଲାଗି ଚଷି ଧାନ ରୋଇବା<br>ପ୍ରବାଦ:—<br>ଶ୍ରାବଣ ପୁରୋ, ଭାଦ୍ରବ ବାରୋ<br>ଏଥି ମଧ୍ୟେ ଯେତେ ହୁଏ ପାରୋ ॥<br>ପାହାଡ଼ିଆ ଅଞ୍ଚଳରେ ଗୁଞ୍ଜି କଟା ଆରମ୍ଭ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | (୯) ଅଶ୍ଳେଷା, ଭୁଜଙ୍ଗ ବା ରାହୁ କକଡ଼ାରେ ଅବସ୍ଥିତ ମଧ୍ୟ ଆକାଶରେ, ପୁଷ୍ୟାର ଦକ୍ଷିଣରେ ଅବସ୍ଥିତ । ୬ଟି ତାରା ବଳଶି-କଣ୍ଟା ବା କୁକୁର ଲାଙ୍ଗୁଡ଼ ମୋଡ଼ ହୋଇ ଠିଆ ରହିବା ଆକାରରେ ରହିଥାନ୍ତି । କକଡ଼ା ରାଶିରେ ଅବସ୍ଥିତ । | ଜୁଲାଇ ୩୧ରୁ ଅଗଷ୍ଟ ୧୩ ତାରିଖ ଛତାଲଗି ଅମାବାସ୍ୟା, ଧାନ ଉଦ୍ଧଡ଼ା, ରୁଆ ଘମା ଘୋଟ ଲଗେ । ପ୍ରବାଦ ଅଛି :— "ଆଷାଢ଼େ ରୁଏ ଖେତକୁ ଶ୍ରାବଣେ ରୁଏ ପେଟକୁ" ମଧୁର ନଳିତା କଟା ଆରମ୍ଭ କାଦୁଲ ପଦର ବସ୍ତୁବଛ । |

୧୮



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୫ । ଶ୍ରାବଣ – ଭାଦ୍ରବ | ସିଂହ | (୧୦) ମଘା ବା ପିତୃ ସିଂହରେ ଅବସ୍ଥିତ ଦା' ବା କଣ୍ଟୁରି ଆକାର ବିଶିଷ୍ଟ ୬ଟି ତାରା । ଉତ୍ତର ଆକାଶରେ ଲଙ୍ଗଳ ଆକୃତି ଧରି ଦେଖାଯାନ୍ତି ମାଘ ପୂର୍ଣ୍ଣିମାଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଅଗଷ୍ଟ ୧୫ରୁ ୨୬ ତାରିଖ ପର୍ଯ୍ୟନ୍ତ ଗହ୍ମା ପୂର୍ଣ୍ଣିମା, ହରି ଜନ୍ମାଷ୍ଟମୀ, ଧାନ ବେଉଷଣ ଶେଷକରି କୃଷୀ ତାର ବଳଦ ଓ ଗୋରୁଙ୍କୁ ଗହ୍ମା ପୂର୍ଣ୍ଣିମାଦିନ ପୂଜା କରେ । ଗଞ୍ଜାମ ଜଲରେ ଗହ୍ମା ପୂର୍ଣ୍ଣିମା ହଳଧୂଆ ପୂର୍ଣ୍ଣିମା ନାମରେ ଅଭିହିତ । ଧାନ ରୁଆରୋଇ ପ୍ରାୟ ଶେଷ । ବୁଣାବୁଣି ଆରମ୍ଭ ହୁଏ । ଆଦିବାସୀମାନେ ଗୁର୍ଜି, କୋଶଲା କାଙ୍ଗୁ ଓ ମାଣ୍ଡିଆ କଟାକଟି ଆରମ୍ଭ କରନ୍ତି । କୋରାପୁଟ ଜଲରେ ନାଇଜର ବୁଣାବୁଣି ଓ କନ୍ଦମୂଳ ଲଟା ଲଗା ହୁଏ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୧୧) ପୂର୍ବ ଫାଲ୍‌ଗୁନୀ ବା ଯୋନିଭ ସିଂହ ରାଶିରେ ଅବସ୍ଥିତ । ଉତ୍ତର ଆକାଶରେ ଉତ୍ତର ପଶ୍ଚିମ ହୋଇ ଖଟଖୁରା ପରି ୨ଟି ତାରା । | ଅଗଷ୍ଟ ୨୭ରୁ ସେପ୍‌ଟେମ୍ବର ୯ ତାରିଖ ପର୍ବ—ହରଜନ୍ମାଷ୍ଟମୀ, ସପ୍ତପୁରୀ ଅମାବାସ୍ୟା, ଗଣେଶ-ଚତୁର୍ଥୀ । ଧାନ ରୁଆ ଶେଷ । ଏହାପରେ ରୋଇଲେ ଖୁବ୍ ପାଖ ପାଖ ରୋଇବାକୁ ପଡ଼େ । ପାହାଡ଼ିଆ ଅଞ୍ଚଳରେ ହରଡ଼, ମୁଗ, ରାମତିଳ ବୁଣା, ଧୂଆଁପତ୍ର ତଳିପକା, ହେଦେଇ ରାଶି ଓ ଗୋଡ଼ା ଧାନ କଟା ଆରମ୍ଭ । |

ପୂର୍ବଫାଲ୍‌ଗୁନୀ

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୬ । ଭାଦ୍ରବ-ଆଶ୍ୱିନ | କନ୍ୟା | (୧୨) ଉତ୍ତର ଫାଲ୍‌ଗୁନୀ ବା ଅର୍ଯ୍ୟମା—<br><br>ସିଂହରେ ୧/୪, କନ୍ୟାରେ ୩/୪ ଉତ୍ତର ଆକାଶରେ ଉତ୍ତର ଦକ୍ଷିଣ ହୋଇ ୨ଟି ତାରା ପୂର୍ବ-ଫାଲ୍‌ଗୁନୀ ନକ୍ଷତ୍ରର ପୂର୍ବରେ ଅବସ୍ଥିତ ।<br><br>ପୂର୍ବ ଫାଲ୍‌ଗୁନୀ ଏବଂ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରକୁ ଯୋଗକଲେ ଗୋଟିଏ ଖଟପରି ଦେଖାଯିବ । ଫଗୁଣ ମାସରେ ଚନ୍ଦ୍ର ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ରରେ ରୁହନ୍ତି । | ସେପ୍‌ଟେମ୍ବର ୧୦ତାରିଖରୁ ୨୩ ତାରିଖ<br><br>ପର୍ବ—ରାଧାଷ୍ଟମୀ, ସୁନିଆଁ, ଅନନ୍ତ ଚତୁର୍ଦ୍ଦଶୀ, ଇନ୍ଦୁ ପୂର୍ଣ୍ଣିମା । ଧାନ ବଛୁଛନ୍ତି ।<br><br>ପ୍ରବାଦ:—<br>"ବଛୁସାର, ବାଛୁ ନ ପାରଲେ ମୂଳ ଉପାଡ଼ ।"<br><br>ଧାନବଛା ପରେ ପରେ ସାର ପ୍ରୟୋଗ ( ଖରାଟାଣ ହେଲେ ଭୋଦେଇ ଖରାରେ ଧାନ କ୍ଷେତରେ ଶ୍ରେଷ୍ଠ ଶ୍ରେଷ୍ଠ ମାଛ ମରି ଭାସିବ ) କୋଳଥ, ସୋରିଷ, ସେଷି ବୁଣା ଆରମ୍ଭ । ବଡ଼ଆଳଧାନ କଟାକଟି, |



**ଉତ୍ତର ଫାଲଗୁନୀ**

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| | | | କାର୍ତ୍ତିକା ଫୁଲକୋବି, ବନ୍ଧାକୋବି, ବିଲାତି ବାଇଗଣ ଓ ଶୀତକାଳୀନ ପନିପରିବା ଲଗାଇବା ଲାଗି କ୍ଷେତ ତିଆରି ଏବଂ ଲଗା ଆରମ୍ଭ । ଆଖୁ କ୍ଷେତରେ ଭେଳା ବନ୍ଧା, କନ୍ଧମାଳ ଅଞ୍ଚଳରେ ଜାଡ଼ ଓ ଗଡ଼ା ଫସଲ କଟାଯାଏ । ମକା କ୍ଷେତ ଭିଙ୍ଗି ସୋରିଷ ବୁଣାଯାଏ । ମାଣ୍ଡିଆ ଥୋପ କଟା ହୁଏ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|   |    | (୧୩) ହସ୍ତା ବା କଣ୍ଡ | ସେପ୍ଟେମ୍ବର ୨୭ରୁ ଅକ୍ଟୋବର ୭ |
| | | (କ) କନ୍ୟା ରାଶିରେ ଅବସ୍ଥିତ | ପର୍ବ—ମୂଳାଷ୍ଟମୀ ବା ଦୁତିଆଓଷା । |
| | | ମଧ୍ୟ ଆକାଶରେ ଏବଂ ଦକ୍ଷିଣ | ସମୁଦ୍ରକୂଳଆ ଜିଲାଗୁଡ଼ିକରେ ବିଆଳି |
| | | ଆକାଶରେ ମଘା ନକ୍ଷତ୍ରର | ଧାନକଟା, ଅମଳ । ବିରି, କୋଳଥ, |
| | | ଦକ୍ଷିଣ-ପୂର୍ବରେ ଅବସ୍ଥିତ ୫ଟି | ସୋରିଷ ବୁଣା ଆରମ୍ଭ । ଶୀତକାଳିନ |
| | | ତାରା । ଏମାନେ ସମକୋଣରେ | ପନିପରିବା ଲଗାଇବା ଲାଗି ଜମି |
| | | ଭଙ୍ଗା ହୋଇଥିବା ହାତର | ତିଆରି ଓ ଲଗା । |
| | | ଆକୃତି ଆକାର ରହିଥାନ୍ତି । | ଧାନ କ୍ଷେତରେ ପାଣି ବନ୍ଧାଇ |
| | | ପ୍ରତ୍ୟେକ ତାରାର ବର୍ଣ୍ଣ ପୃଥକ୍ । | ରଖିବା ପ୍ରଧାନ କାମ । |
| | | ଯଥା:— | ପ୍ରବାଦ:— |
| | | ୧ମ—ହଳଦିଆ···(ହ୍ରୋପଦୀ) | ହସ୍ତେ ପାଣି—ପକ୍କା ହାଣି |
| | (କ) | ୨ୟ } —ଧଳା | ଆଶ୍ୱିନ ପାଣି—ବନ୍ଧା ଟାଣି |
| ହସ୍ତ | | ୩ୟ } | ନ ମାନିବୁ ଯଦି ହୁଣ୍ଡା ଚଷା |
| | | ୪ର୍ଥ—ନାଲି···(ଆପ) | ଶେଷରେ ହେବୁ ଫସର ଫସା |
| | | ୫ମ—ହଳଦିଆ···(ଶବଣ୍ଡ) | |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|  ହସ୍ତା (ଖ) | | କନ୍ୟା ରାଶିରେ ଅବସ୍ଥିତ । (ଖ) ଦକ୍ଷିଣାକାଶରେ— ହାତର ୫ଟି ଆଙ୍ଗୁଠିକୁ ଭୂମିରେ ଟିପ ମାରିବା ଚିହ୍ନ ପରି ଅବସ୍ଥିତ ୫ଟି ନକ୍ଷତ୍ର ଏହାର ଅନ୍ୟ ନାମ କରତଳ ବା ସୁପର୍ଣ୍ଣମଣ୍ଡଳ । | ଧାନ ଦୋପୁର ବଢୁବଢୁ । ଏହି ନକ୍ଷତ୍ରରେ ବର୍ଷା ଛାଡ଼ି ଗଲେ ଧାନ ମରୁଡ଼ି ମରିବାର ପୂର୍ଣ୍ଣ ଆଶଙ୍କା ରହିଥାଏ । ରବି ଫସଲ ବୁଣାବୁଣିରେ ବାଧା ଘଟେ । ବର୍ଷା ଅଭାବରୁ ଜମି ଠିରକଯାଏ । ରବି ଫସଲ ଅମୁହାଁ ବୁଣା ବା ଚାଷ କରି ବୁଣା ସମ୍ଭବ ହୁଏ ନାହିଁ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
| ୭ । ଆଶ୍ୱିନ - କାର୍ତ୍ତିକ | | (୧୪) ଚିତ୍ରା, ଉଷ୍ଟ୍ରା ବା ନାଭିତାର<br><br>କନ୍ୟାରେ ½ ତୁଳାରେ ½ ମଧ୍ୟ ଆକାଶରେ ଅବସ୍ଥିତ । ଏହା ଗୋଟିଏ ଉଜ୍ଜ୍ୱଳ ତାରା ମୁକ୍ତାପର । ବର୍ଣ୍ଣ ନୀଳାଭ ଶ୍ୱେତ । ଚୈତ୍ର ପୂର୍ଣ୍ଣିମାବେଳ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଅକ୍ଟୋବର ୮ରୁ୧୯ ତାରିଖ<br>ପର୍ବ—ମହାଳୟା, ଦଶହରା<br>ରବି ଫସଲ ବୁଣାବୁଣି ।<br>ପ୍ରବାଦ:—<br>୧—ରବି ବୁଣିବା ଶୁଣ<br>ଆଶ୍ୱିନ କାର୍ତ୍ତିକ ମଧ୍ୟ<br>କୁଆଁର ପୁନେଇ ନିକଟ<br>ଚେଣିକ ଚଷା ଛଟପଟ<br>୨—ଚିତ୍ରା—ଚନା, ଚୌଗୁନା<br>ସ୍ୱାତି—ଗେହୁଁ, ଦୁଗୁନା ।<br>ଗର୍ଭଣା ସଂକ୍ରାନ୍ତିକୁ ଧାନ<br>ଥୋଡ଼ ଧରିଥାଏ । ଧାନ<br>କ୍ଷେତରୁ ରାହାଡ଼ ବାହୁଙ୍ଗା<br>କଟା । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ସ୍ୱାତୀ | | (୧୫) ସ୍ୱାତୀ, ବାୟୁ, ନିଷ୍ଟ୍ୟ ତୁଳ ରାଶିରେ ଉତ୍ତର ଆକାଶରେ ଅବସ୍ଥିତ । ଏହା ଗୋଟିଏ ରକ୍ତାଭ ତାରା କୁଙ୍କୁମ ପ୍ରାପ୍ତ ଅରୁଣ ବର୍ଣ୍ଣ ସପ୍ତର୍ଷିମଣ୍ଡଳର ଶେଷ ତାରାର ବିପରୀତ ଦିଗରେ ଅବସ୍ଥିତ । | ଅକ୍ଟୋବର ୨୦ରୁ ନଭେମ୍ବର ୨ ତାରିଖ । ପର୍ବ—କୁମାର ପୂର୍ଣ୍ଣିମା ଶୀତ-କାଳୀନ କୋବି, ମଟର, ବିନ୍, ବିଲାତି ବାଇଗଣ, ବିଲାତି ଆଳୁ ଏବଂ ଗହମ ନିମନ୍ତେ ଜମି ତିଆରି । ନଈପଠା ଏବଂ ମଟାଳ ଜମିରେ ଧୂଆଁପତ୍ର, ବାଇଗଣ, କଲରା; କଖାରୁ ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|  ବିଶାଖା (କ)  ବିଶାଖା (ଖ) | | ୮—କାର୍ତ୍ତିକ-ମାର୍ଗଶିର (୧୬) ବିଶାଖା ଭୁଜରେ ୦/୪, ଦୃଷ୍ଟରେ ୨/୪ ଦକ୍ଷିଣ ଆକାଶରେ, ତୁଳାର ଦକ୍ଷିଣ-ପୂର୍ବରେ ଉତ୍ତର ଦକ୍ଷିଣ ହୋଇ ଅବସ୍ଥିତ ଦୁଇଟି ତାରା । କଟାପାଣ୍ଟରେ ଲିଖିତ ତୋରଣାକୃତ ୫ଟି ନକ୍ଷତ୍ର ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ଉଦନ୍ତି । ବିଶାଖା ତୋରଣର ତାରକା ଦୁଇଟି (୧ମ ଓ ୨ୟ)ର ମଧ୍ୟଦେଇ ସୂର୍ଯ୍ୟ ଗତି କରନ୍ତି । | ନଭେମ୍ବର ୨ରୁ ୧୩ ତାରିଖ । ପର୍ବ—ଦୀପାବଳୀ ଅମାବାସ୍ୟା, ଗୋପାଷ୍ଟମୀ । ଖେସାରି, ବୁଟ, ଚଣା, କଳାମୁଗ, ବର ଅମୁଣ୍ଡା ବୁଣା ଆରମ୍ଭ । ବିଲାତିଆଳୁ ଲଗା ଓ ଗହମବୁଣା କାମ ଆରମ୍ଭ । ପଠା ଓ ଅଟାଳ ଜମି ଚାଷ ଓ ଫସଲ ଆବାଦ । ପ୍ରବାଦ— କାର୍ତ୍ତିକ ମାସ ରାତ୍ତିହର୍ ଯୋଡ଼ି ଟାଙ୍ଗ ପସାର ଘର ମତ୍ସ୍ୟୋଡ଼ି (କାର୍ତ୍ତିକମାସ ରାତିରେ ଘରେ ଗୋଡ଼ ଲମ୍ବାଇ ନଶୋଇ ରବି ଫସଲ ଲାଗି ଜମି ଚାଷ କରିବା ଦରକାର) । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| <br>**ଅନୁରାଧା** | | ୧୭ । ଅନୁରାଧା ବା ମିତ୍ର ବୃଶ୍ଚିକ ରାଶିରେ ଅବସ୍ଥିତ । ଦକ୍ଷିଣ ଆକାଶରେ ଦେଖାଯାଏ । ୫ଟି ତାରା ସର୍ପ ବା କଙ୍କଡ଼ା ବିଚ୍ଛା ମୁଣ୍ଡ ଆକାରରେ ରହିଥାନ୍ତି । ଅନ୍ୟ ମତରେ ସର୍ପାକୃତି ୫ଟି ତାରା । | ନଭେମ୍ବର ୧୯ରୁ ୨୭ ତାରିଖ । ପର୍ବ — ରାହାସ ପୂର୍ଣ୍ଣିମା ପ୍ରଥମାଷ୍ଟମୀ । ବୁଟ, ଗହମ ବୁଣାବୁଣି । ବିଲାତି ଆଳୁ, କୋବି, ବିଲାତିବାଇଗଣ ଲଗା ମଟର ବିନ୍ ବୁଣା । ପିଆଜ, ରସୁଣ ଲଗା । ଧନିଆ ବୁଣା ପୋଟଳ ଲଗି ମନ୍ଦା ଖୋଳା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| |    ଜ୍ୟେଷ୍ଠା | ୧୮ । ଜ୍ୟେଷ୍ଠା ବା ବାସବ ବୃଷ୍ଟୁରେ ଅବସ୍ଥିତ । ଦକ୍ଷିଣା-କାଶରେ ଉତ୍ତର ପଶ୍ଚିମରୁ ଦକ୍ଷିଣପୂର୍ବକୁ ଅବସ୍ଥିତ ୩ଟି ତାରା । ଏହା ବରାହ ଦନ୍ତପରି । ଏହି ୩ଟି ତାରା ମଧ୍ୟରୁ ମଝିତାରା ଗଙ୍ଗଶିଉଳି ଫୁଲର ରଙ୍ଗପରି ନାଲି । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ନଭେମ୍ବର ୨୭ରୁ ଡିସେମ୍ବର ୮ ତାରିଖ । ପର୍ବ—ମାଣବସା । ଲଘୁଧାନ କଟା ଆରମ୍ଭ, କନ୍ଦମୂଳ, ସାରୁ, ଖମ୍ବଆଳୁ, ଚିନାବାଦାମ ଖୋଳା ବିଲାତି ଆଳୁରେ ସାରପିଢ଼ିଆ ଦେଇ ହୁଡ଼ାଟେକା । ପାହାଡ଼ ବିଲାତିଆଳୁ, କୋବି ଓ ଶୀତକାଳୀନ ପରିବା ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୯। ପୌଷ | | (୧୯) ମୂଳା ଧନୁ ରାଶିରେ ଅବସ୍ଥିତ । ଦକ୍ଷିଣାକାଶରେ କଙ୍କଡ଼ା ବଗ୍ରର ବଙ୍କା ଲାଙ୍ଗୁଡ଼ପରି ଶଙ୍ଖ ବା ଧନୁର କୋଟି ଆକାରରେ ଅବସ୍ଥିତ ୯ଟି ତାରା । | ଡିସେମ୍ବର ୯ ତାରିଖରୁ ୨୧ ତାରିଖ ପକ୍ଷ--ପଣ୍ଡୁ ପୂର୍ଣ୍ଣିମା ଧାନ କଟାକଟି ଆଳୁ, କୋବିରେ ସାର ପିଡ଼ିଆଦିଆ । ଝାଇଁମୁଗ ଅପାଣିଆ ବୁଣା ଆରମ୍ଭ । |

(ଅନୁରାଧା, ଜ୍ୟେଷ୍ଠା ଓ ମୂଳା ନକ୍ଷତ୍ରର ତାରାମାନଙ୍କୁ କଳ୍ପନାଦ୍ୱାରା ଯୋଗକଲେ ଲାଞ୍ଜକୁ ଉପରକୁ ଗୁଡ଼ାଇକରି ରହିଥିବା ଗୋଟିଏ କଙ୍କଡ଼ାବଗ୍ର ହେବ । ଏହି ବଗ୍ରର ମୁଣ୍ଡ ଅନୁରାଧା, ପିଠି ଜ୍ୟେଷ୍ଠା ଏବଂ ଲାଙ୍ଗୁଡ଼ ମୂଳା । )



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|  ପୂର୍ବାଷାଢ଼ା (କ) | | (୨୦) ପୂର୍ବାଷାଢ଼ା ଧନୁରେ ଅବସ୍ଥିତ, ଦକ୍ଷିଣା-କାଶରେ ଛାୟା ପଥରେ କୁଲ ବା ସର୍ପ ଆକୃତି ବିଶିଷ୍ଟ ୪ଟି ତାରା । ଚତୁର୍ଥ ତାରା ତୁଳସୀ । ଆଷାଢ଼ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଡିସେମ୍ବର ୨୨ରୁ ଜାନୁୟାରି ୩ ପର୍ବ—ବକୁଳ ଅମାବାସ୍ୟା । ଧାନକଟା, କୋଳଥ ଜଡ଼ା ଓ ଅମଳ ଝାଇଁମୁଗ ବୁଣା । ଡାଲୁଅ ଧାନ ଚଳପକା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ପୌଷ-ମାଘ | | (୨୧) ଉତ୍ତରାଷାଢ଼ା ବା ବଶୁ ଧନୁରେ ¼ ମକରରେ ¾ ଦକ୍ଷିଣାକାଶରେ ଛାୟା ପଥର ପୂର୍ବରେ ବିଷମ ଚତୁର୍ଭୁଜ ଆକାରର ୪ଟି ତାରା । | ଜାନୁୟାରୀ ୪ରୁ ୧୭ ତାରିଖ ପର୍ବ—ଶାମ୍ବଦଶମୀ ପୌଷ-ପୂର୍ଣ୍ଣିମା ମକର ସଂକ୍ରାନ୍ତି । ଆଖୁପେଡ଼ା ପ୍ରବାଦ— ଆଖୁକ୍ଷେତ ଦଣେ ସଚନ, ଆଖୁ ଶାଳରେ ବସି, ଗ୍ରାମକଥା ଗ୍ରାମବାସିଏ ଗଳ୍ପ କରନ୍ତି ହସି । |

ଉତ୍ତରାଷାଢା (କ)

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
| --- | --- | --- | --- |
|  **ଶ୍ରବଣା** | | (୨୨) ଶ୍ରବଣା ବା କେଶବ ମକର ରାଶିରେ ଅବସ୍ଥିତ ମଧ୍ୟାକାଶରେ ଉତ୍ତର ଦକ୍ଷିଣ ଭାବରେ ୩ଟି ତାରା । ଏହି ୩ଟି ତାରାକୁ ଯୋଗକଲେ ଗୋଟାଏ ବାଡ଼ି ବା ଶର ହେବ । ଶ୍ରାବଣ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି । | ଜାନୁୟାରୀ.୧୬ରୁ ୨୯ ତାରିଖ ପର୍ବ – ତ୍ରିବେଣୀ ଅମାବାସ୍ୟା ଆଖୁପେଡ଼ା; ଡାଲୁଅ ଧାନରୁଆ ଏବଂ ଅଚ୍ଛରା ଝାଇଁମୁଗ ବୁଣା ଆଖୁ ଲଗା । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୨୩) ଧନିଷ୍ଠା<br>ମକରରେ ୍, କୁମ୍ଭରେ ୍ ଦକ୍ଷିଣ ଆକାଶରେ ଛାୟାପଥର ପୂର୍ବକୂଳରେ ୍ବ ଜ୍ୟେଷ୍ଠାର ଉତ୍ତର ପୂର୍ବରେ ୫ଟି ତାରା । ଏହି ୫ଟି ନକ୍ଷତ୍ରକୁ ଯୋଗକଲେ ସୂତା ଲଗା ଘୁଡ଼ିପରି ଦେଖାଯାଏ, ମର୍ଦ୍ଦଳାକାର ୫ଟି ତାରା । | ଜାନୁୟାରୀ ୩୦ରୁ ଫେବୃୟାରୀ ୧୨ ତାରିଖ<br>ପର୍ବ—ଶ୍ରୀପଞ୍ଚମୀ; ମାଘ ସପ୍ତମୀ ।<br>ଗଞ୍ଜାମ ଓ ପୁରୀଜିଲାରେ ଅମୁହାଁ ମୁଗ ଉପୁଡ଼ା ଆରମ୍ଭ, ଡାଲୁଅ ଧାନ ରୁଆ, ଝାଇଁମୁଗ ବୁଣା,-ଲଙ୍କାମରିଚ ଓ ଚେଣ୍ଡା ମାଣ୍ଡିଆ ରୁଆ ଶେଷ ଋଷିକୂଲ୍ୟା ନଦୀ ଧାରରେ ଶଙ୍ଖସାରୁ ଲଗା ଆରମ୍ଭ । |



| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|  ଶତଭିଷା (ଢ) | | (୨୪) ଶତଭିଷା। କୁମ୍ଭରେ ଅବସ୍ଥିତ । ମୂଳାଧାର ଛାଡ଼ିଯାଇ ଇତସ୍ତତଃ ବିକ୍ଷିପ୍ତ ୭ଟି ତାରା । ବାମ ପାଖରୁ ଗଣିଲେ ୧ମ ଗାନ୍ଧାରୀ, ୨ୟ ଧୃତରାଷ୍ଟ୍ର, ୩ୟ ବିଦୁର। ଦୁର୍ଯ୍ୟାଧନ ଇତଃସ୍ତତଃ ବିସ୍ତୃତ ପ୍ରେତତାରା ସମାହାର । | ଫେବୃୟାରୀ ୧୩ରୁ ୨୫ ତାରିଖ ପବ—ଶିବରାତ୍ରି । ଆସନ୍ତାବର୍ଷ ଲାଗି ଧାନଜମି କଡ଼ାଣ । ବିଲତି-ଆଳୁ ଖୋଳା । ଅମୁହାଁ ବୁଣା ଖେସାରି, ଡରି ଉପୁଡ଼ା । କୋରାପୁଟ ଜିଲ୍ଲାରେ ଆମ୍ବଧାନ ବୁଣା ଆରମ୍ଭ । |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| | | (୨୫) ପୂର୍ବ ଭାଦ୍ରପଦ<br>କୁମ୍ଭରେ ୩/୪, ମୀନରେ ୧/୪<br>ଉତ୍ତର ଆକାଶରେ ଦୁଇଟି<br>ଖଟଖୁରାପରି ଉଜ୍ଜ୍ୱଳ ନକ୍ଷତ୍ର<br>ଭାଦ୍ର ପୂର୍ଣ୍ଣିମାରେ ଚନ୍ଦ୍ର ଏହି<br>ନକ୍ଷତ୍ରରେ ରହନ୍ତି । | ଫେବୃୟାରି ୨୭ରୁ ମାର୍ଚ୍ଚ ୧୨<br>ପର୍ବ—ଦୋଳ<br>ଅମୁହାଁ ବୁଣା ବର ଉପଡ଼ା<br>ନାଲଙ୍କ ଖସାବୁଣା |

ପୂର୍ବଭାଦ୍ର ପଦ

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
| ୧୨ । ଚୈତ୍ର | ମୀନ  ଉତ୍ତରଭାଦ୍ର ପଦ | (୨୬) ଉତ୍ତର ଭାଦ୍ରପଦ<br>ମୀନରେ, ପୂର୍ବଭାଦ୍ରପଦର ପୂର୍ବରେ ଉତ୍ତର ଆକାଶରେ ୨ଟି ଖଣ୍ଡ ଖୁବ୍ ପାଖ ଚହ୍ଲିତ ତାରା କେବେ କେବେ ଭାଦ୍ରବ ପୂର୍ଣ୍ଣିମାରେ ଚନ୍ଦ୍ର ଏହି ନକ୍ଷତ୍ରରେ ରହନ୍ତି ।<br>ପୂର୍ବଭାଦ୍ରପଦ ଓ ଉତ୍ତର ଭାଦ୍ର ପଦର ୪ଟି ଯାକ ନକ୍ଷତ୍ରକୁ ଯୋଗକଲେ ଗୋଟିଏ ବର୍ଗ-କ୍ଷେତ୍ରାକାର ଖଣ୍ଡ ହେବ । ତେଣୁ ଏମାନଙ୍କୁ "ପେଗାସସ୍‌ର ବର୍ଗ-କ୍ଷେତ୍ର" କୁହାଯାଏ । | ମାର୍ଚ୍ଚ ମାସ ୧୩ରୁ ମଇ ୨୬ ତାରିଖ<br>ପର୍ବ—ନାମକୋଳ ଅମାବାସ୍ୟା ବାରୁଣୀ ସ୍ନାନ ।<br>ଡାଲୁଅ ଧାନ କଟା ଏବଂ ଝାଇଁ ମୁଗ ଉପୁଡ଼ା ଆରମ୍ଭ ଚଟିକଡ଼ା ତୋଳା, ଗଣ୍ଡା ଆଖୁ ଲଗା କୋବି ପୁଟ୍ଠ ଜଳର ମାଛଲୁଣ୍ଡ ଉପତ୍ୟକାର ଗେଡ଼ଡ଼ା ଜମିରେ ଚପିଟି ଓ କେରଣ୍ଡିଧାନ ବୁଣା |

| ମାସ | ରାଶି | ନକ୍ଷତ୍ର | କୃଷିକାର୍ଯ୍ୟ |
|---|---|---|---|
|   | | (୨୭) ରେବତୀ<br>ମୀନ ରାଶିରେ, ଉତ୍ତର ଆକାଶରେ ଉତ୍ତର ଭାଦ୍ରପଦର ପୂର୍ବରେ ମାଛପରି ବା ଓଲଟ ଦେଉଳ ଆକୃତିର ୧୩ଟି ନକ୍ଷତ୍ର । କିନ୍ତୁ ପ୍ରକୃତରେ ୩୨ଟି ତାରା ନେଇ ଏହା ଗଠିତ । ଏଥିମଧ୍ୟରୁ ୧୩ଟି ମାତ୍ର ଦେଖାଯାଏ । | ମାର୍ଚ୍ଚ ମାସ ୨୭ ତାରିଖରୁ<br>ଏପ୍ରିଲ ୧୨ ତାରିଖ<br>ପର୍ବ—କୈବର୍ତ୍ତମାନଙ୍କର ଚୈତ୍ର ପର୍ବ ଏବଂ ଶାନ୍ତାଳମାନଙ୍କର ଶାଳେଇ ପର୍ବ ।<br>ମେଘ 'ଚଇତମଚା' ହୋଇ କୁଆପଥର ବୃଷ୍ଟି ହୁଏ । ଖାଇଁ ମୁଗ ଉପୁଡ଼ା, ଡାଳୁଅ ଧାନ କଟା, ଗଣ୍ଡା ଆଖୁ ଲଗା, ହଳଦ କଖାରୁ ଲଗି କନ୍ଦମାନଙ୍କର ଶାଳୁଆପନ ସଂଗ୍ରହ । ନଳିତା ବୁଣା ଲଗି ଜମି ତିଆରି । |

## (ଗ) ନକ୍ଷତ୍ର ଓ ବୃଷ୍ଟି

ଗ୍ରହ ଏବଂ ନକ୍ଷତ୍ର ମିଳନରେ ବର୍ଷାହେବା ନ ହେବା ସୂଚନା ପଞ୍ଜିକାରେ ଦିଆଯାଇଥାଏ ।

ଯଥା :—

୧—ଧ୍ରୁବେଚ ବୈଷ୍ଣବେ ହସ୍ତେ, ମୂଳେ, ଶୁକ୍ରେ ଚରନ କୁଜଃ
ସଦ୍ୟ କରୋତନା ବୃଷ୍ଟିନ୍ କୃତ୍ତିକାସୁ ମଘା ସୁଚ ॥

ଅର୍ଥ--କୁଜ—ମଙ୍ଗଳଗ୍ରହ, ବୈଷ୍ଣବ—ଶ୍ରବଣା ନକ୍ଷତ୍ର ମଙ୍ଗଳଗ୍ରହ ସହିତ ଶ୍ରବଣା, ମୂଳା, କୃତ୍ତିକା ଓ ମଘା ନକ୍ଷତ୍ର ଥିଲେ ଅନାବୃଷ୍ଟି ଘଟେ ।

୨—ସ୍ୱାତିତସ୍ତୁ ଗତେ ପୂର୍ବେ, ପଶ୍ଚିମେ ପିତୃ ପଞ୍ଚକେ
ଅନାବୃଷ୍ଟି ଭୃଗୁ କୁର୍ଯ୍ୟାତ୍, ବିପରୀତେ ପ୍ରବର୍ଷଣଂ ॥

ଅର୍ଥ—ସ୍ୱାତୀ ନକ୍ଷତ୍ର ତିନୋଟି—ହସ୍ତା, ଚିତ୍ରା ଓ ସ୍ୱାତୀ ପୂର୍ବ ଦିଗରୁ ଏବଂ ପିତୃପଞ୍ଚକ ।

ଯଥା—ମଘା, ପୂର୍ବଫାଲ୍‌ଗୁନୀ, ଉତ୍ତରଫାଲ୍‌ଗୁନୀ, ହସ୍ତା ଓ ଚିତ୍ରା-ନକ୍ଷତ୍ର ପଶ୍ଚିମ ଦିଗରୁ ବର୍ଷା କରନ୍ତି ଏବଂ ଶୁକ୍ର ଗ୍ରହ ଅନାବୃଷ୍ଟି କରାଏ ।

୩—ଅଙ୍ଗାରକୋ ଯଦା ସିଂହେ ତଦାଙ୍ଗାରମୟୀ ମହୀ
ସଏବର-ବିଣାଯୁକ୍ତଃ ସମୁଦ୍ରପି ଶୋଷୟେତ୍ ॥

ଅର୍ଥ—ମଙ୍ଗଳଗ୍ରହ ସିଂହ ରାଶିରେ ରହିଲେ ପୃଥିବୀ ଅଙ୍ଗାରମୟ ହୋଇଉଠେ । ରବିଯୁକ୍ତ ହେଲେ ମଧ୍ୟ ସମୁଦ୍ର ଶୁଖାଇଦିଏ ।

୪—ମିତ୍ର ସର୍ପା ବିଶାଖାଚ ତନାପୁବା ପବନନ
ଅଦିତି, ଅଶ୍ୱିନୀ, ପୂର୍ଣ୍ଣା ଚଳତ ମଙ୍ଗାରକ ଜଳ ॥

ଅର୍ଥ—(ମିତ୍ର—ଅନୁରାଧା, ସର୍ପା—ଅଶ୍ଳେଷା, ତ୍ରିପୂର୍ବା—ପୂର୍ବାଫାଲ୍‌ଗୁନ, ଉତ୍ତରାଫାଲ୍‌ଗୁନ ଏବଂ ପୂର୍ବଭାଦ୍ରପଦ, ଅଦିତି-ପୁନର୍ବସୁ, ପୁଷ୍ଣା—ରେବତୀ )।

ମଙ୍ଗଳଗ୍ରହ ଅନୁରାଧା, ଅଶ୍ଳେଷା, ପୂର୍ବାଭାଦ୍ରପଦ, ପୂର୍ବଫାଲ୍‌ଗୁନ ଉତ୍ତରାଫାଲ୍‌ଗୁନ, ପୁନର୍ବସୁ, ଅଶ୍ୱିନୀ ଏବଂ ରେବତୀ ନକ୍ଷତ୍ରରେ ରହିଲେ ବର୍ଷାହୁଏ ।

୫—ମଘା, ଆରଦ୍ରା, ଭରଣୀ ଶ୍ଚୈବ ସ୍ୱାତୀ ବାରୁଣୀବଚ
ଏଷୁ ସ୍ଥାନେ ସ୍ଥିତେ ଭୌମଃ, ପାବତ୍ କାଳେ ନବର୍ଷନ୍ତି ।

ଅର୍ଥ—ମଘା, ଆରଦ୍ରା, ଦ୍ୱିଜା (ଭରଣୀ), ସ୍ୱାତୀ, ବାରୁଣୀ (ଶତଭିଷା) ଏହି ୫ଟି ନକ୍ଷତ୍ର ସହିତ ମଙ୍ଗଳ ଥିଲେ ବର୍ଷା ହୁଏ ନାହିଁ ।

ଖନାଙ୍କ ମତରେ—

ଜ୍ୟେଷ୍ଠାମାରେ, ମୂଳାଡାରେ, ପୂର୍ବାଷାଢ଼ା ଡାକ୍‌ପୁକାରେ
ଉତ୍ତରାଷାଢ଼ା ହୋଇବାକ୍ ଯେବେ, ଗ୍ରାମ ଗ୍ରାମ କରି ବୁଲଏ ଚତବେ ।

ଅର୍ଥ—ପୌଷ ମାସ ବହୁଳ ଅମାବାସ୍ୟାଦିନ ଜ୍ୟେଷ୍ଠା ନକ୍ଷତ୍ର ପଡିଲେ ବର୍ଷା ହୁଏ ନାହିଁ, ମୂଳା ନକ୍ଷତ୍ର ପଡ଼ିଲେ ବର୍ଷାହୁଏ ଏବଂ ଭଲ ଫସଲ ହୁଏ । ପୂର୍ବାଷାଢ଼ା ଓ ଉତ୍ତରଷାଢ଼ା ନକ୍ଷତ୍ର ପଡ଼ିଲେ ଶସ୍ୟହାନି ଘଟେ ଏବଂ ଦୁର୍ଭିକ୍ଷ ପଡ଼େ ।

———

# ଉନବିଂଶ ପରିଚ୍ଛେଦ

## ଧାନ

ଧାନ ଏବଂ ଗହମ ମନୁଷ୍ୟର ପ୍ରଧାନ ଖାଦ୍ୟ । ପ୍ରାଚ୍ୟ ଜଗତରେ ଧାନ ଏବଂ ପାଶ୍ଚାତ୍ୟ ଜଗତରେ ଗହମ ମାନବସମାଜର ପ୍ରଧାନ ଖାଦ୍ୟ । ଏସିଆ ମହାଦେଶରେ ପୃଥିବୀରେ ଆମଦାନି ହେଉଥିବାର ଧାନର ଶତକଡ଼ା ୯୩ ଭାଗ ଆମଦାନି ହୁଏ । ଅବଶିଷ୍ଟ ୭ଭାଗ ଅନ୍ୟାନ୍ୟ ଅଞ୍ଚଳରେ ଆମଦାନି ହୁଏ । ପୃଥିବୀରେ ୨୦୦ରୁ ୨୦୩ ମିଲିଅନ ଏକରରେ ଧାନଚାଷ କରାଯାଏ ଏବଂ ବର୍ଷକୁ ୧୯୯ ମିଲିଅନଟନ୍ ଚାଉଳ ଆମଦାନି ହୁଏ ।

ଏସିଆ ମହାଦେଶରେ ଇଣ୍ଡୋଚାଇନା, ବର୍ମା, ଫିଲିପାଇନ୍, ଫରମୋଜା, ଜାପାନ, ଜାଭା, କୋରିଆ, ଭାରତବର୍ଷ ଏବଂ ଚୀନ୍ ଧାନଚାଷର ପ୍ରଧାନ କେନ୍ଦ୍ର । ଦକ୍ଷିଣ-ପୂର୍ବ ଏସିଆ ଧାନଚାଷର ପ୍ରଧାନ ପୀଠ । ଏଥିମଧ୍ୟରୁ ଚୀନ୍ ଏବଂ ଭାରତବର୍ଷରେ ଶତକଡ଼ା ୯୦ ଭାଗ ଅଂଶ ରହିଛି । ଦକ୍ଷିଣ-ପୂର୍ବ ଏସିଆର କୋଟି କୋଟି ଜନତାଙ୍କର ଭାତ ପ୍ରଧାନ ଖାଦ୍ୟ । ଧାନହିଁ ଗୋଟିଏ ଶସ୍ୟ ଯାହାକି ଦକ୍ଷିଣ-ପୂର୍ବ ଏସିଆର ଜନସମାଜକୁ ବଞ୍ଚାଇ ରଖିଛି । ଅନ୍ୟ କୌଣସି ଶସ୍ୟ ଏପରି ଜନବହୁଳ ଏବଂ ବର୍ଦ୍ଧିଷ୍ଣୁ ଜନସମାଜକୁ ବଞ୍ଚାଇ ପାରନ୍ତା ନାହିଁ ।

ଭାରତବର୍ଷର ସମସ୍ତ ଚାଷ ଭୂମିର ଶତକଡ଼ା ୨୧ ଭାଗ ଜମିରେ ଧାନଚାଷ କରାଯାଏ । ଧାନଚାଷର କ୍ଷେତ୍ରଫଳ ୭୫

ମିଲିଅନ ଏକର । ବର୍ଷକୁ ୨୩ ମିଲିଅନ ଟନ ଧାନ ଆମଦାନି ହୋଇଥାଏ ।

ଓଡ଼ିଶା ରାଜ୍ୟର ମୋଟ କୃଷିଜମିର କ୍ଷେତ୍ରଫଳ ୧୩୦ ଲକ୍ଷ ଏକର ଏଥିମଧ୍ୟରୁ ୯୫ ଲକ୍ଷ ଏକରରେ ଧାନ ଚାଷ କରାଯାଏ । ସୁତରାଂ ଓଡ଼ିଶାର କୃଷିଜମିର ଶତକଡ଼ା ୯୦ ଭାଗ ଜମିରେ ଧାନ ଏବଂ ୧୦ ଭାଗ ଜମିରେ ଅନ୍ୟାନ୍ୟ ଫସଲ ଚାଷ କରାଯାଏ । ଓଡ଼ିଶାର ଅର୍ଥନୈତିକ ଅବସ୍ଥା ଉପରେ ଧାନ ଫସଲର ଗୁରୁତ୍ୱ ଅତି ଅଧିକ ।

ପ୍ରାଗ୍ ଐତିହାସିକ ମାନବ ଧାନ ଚାଷ ଆରମ୍ଭ କରିଥିଲ । ଦକ୍ଷିଣ-ପୂର୍ବ ଏସିଆର ଅଷ୍ଟ୍ରୋ-ଏସିଆଟିକ ଜାତି ଧାନ ଚାଷ ଆରମ୍ଭ କରିଥିଲେ । ଆଜକୁ ୫୦୦୦ ବର୍ଷତଳେ ଚୀନ୍ ଦେଶରେ ଧାନଚାଷ ହେଉଥିବାର ପ୍ରମାଣ ମିଳେ । ଚୀନ୍ ଦେଶର ସମ୍ରାଟ ଏକ ପୂଣ୍ୟ ଦିବସରେ ଧାନବୁଣା ଆରମ୍ଭ କରନ୍ତି । ଚୀନ୍ ଦେଶର ଚୁଉବଂଶଙ୍କ ରାଜତ୍ୱକାଳରେ ଖ୍ରୀ: ପୂ: ୭୭୧ରୁ ୬୮୧ ଅବ୍ଦରେ ଜଳସେଚନ କରି ଧାନଚାଷ କରାଯାଉ ଥିବାର ପ୍ରମାଣ ମିଳେ ।

ଦକ୍ଷିଣ-ପୂର୍ବ ଏସିଆ ଧାନଚାଷର ପ୍ରଥମ ଉଦ୍ଭବ କେନ୍ଦ୍ର । ଓଡ଼ିଶାର କୋରାପୁଟ ଜିଲ୍ଲାର ଜୟପୁର ଅଞ୍ଚଳ ଧାନଚାଷର ଦ୍ୱିତୀୟ ଉଦ୍ଭବ କେନ୍ଦ୍ର ରୂପେ ଧରାଯାଇଛି । ଗାଦବା ଓ ଶବରଜାତି ଭାରତବର୍ଷରେ ପ୍ରଥମେ ଧାନଚାଷ ଆରମ୍ଭ କରିଥିଲେ ।

## ଧାନଗଛର ଜୀବନ

ଧାନଗଛର ଜୀବନରେ ଦୁଇଟି ଅବସ୍ଥା ଦେଖାଯାଏ । ଯଥା (୧) ବର୍ଦ୍ଧନ ଏବଂ (୨) ଜନନ । ଥୋଡ଼ ସମୟ ବର୍ଦ୍ଧନ ଏବଂ ଜନନ ଅବସ୍ଥାର ସନ୍ଧି ସ୍ଥଳ ।

**ବର୍ଦ୍ଧନ ଅବସ୍ଥା**—ଧାନଗଛର ଜୀବନ ଧାରଣ ସମ୍ବନ୍ଧିତ ସଂଶ୍ଳିଷ୍ଟ । ଏହି ସମୟରେ ଦୁଇଟି ପ୍ରକ୍ରମ ଦେଖାଯାଏ । ଯଥା (୧) ଚଳ ବା ପନ୍ଥା ଏବଂ (୨) ପିଲମରା ବା ଭେଳା ବନ୍ଧା । ଚଳ ପ୍ରକ୍ରମ ତିନରୁ ଚାରି ସପ୍ତାହ ଧରି ରହେ । ଏହା ପରେ ପରେ ପିଲ ପ୍ରକ୍ରମ ଆରମ୍ଭ ହୁଏ । ପିଲ ପ୍ରକ୍ରମରେ ତିନୋଟି ଥାକ ଦେଖାଯାଏ । ଯଥା (୧) ପ୍ରାତଃ ପ୍ରକ୍ରମ—ପିଲ ଟିମେଇ ଟିମେଇ ବାହାରେ, (୨) ଶିଖର ପ୍ରକ୍ରମ—ପିଲ ଶୀଘ୍ର ଶୀଘ୍ର ବାହାରେ ଏବଂ (୩) ପରିଣତ ପ୍ରକ୍ରମ—ପିଲ ଆଉ ବାହାରେ ନାହିଁ ବରଂ କେତେକ ପିଲ ମରିଯାନ୍ତି । ପିଲ ସଂଖ୍ୟା ଉପରେ ଧାନକେଣ୍ଡା ଏବଂ ଆମଦାନି ନିର୍ଭର କରେ । ପିଲ ସହଳ ବାହାରି ପୁଷ୍ଟିକାରକ ଉପାଦାନ ପାଇ ହୃଷ୍ଟପୁଷ୍ଟ ହୋଇ ବଢ଼ିଲେ ଧାନ ଆମଦାନି ଭଲ ମିଳେ । ତେଣୁ ଧାନ ପିଲେଇବା ଅବସ୍ଥାରେ ଖତ ଓ ସାରପିଣ୍ଡିଆ ଦେବା ଦରକାର । ଏଥିଲାଗି କଅଁଳ ବୁଆ ବେଉଷଣ ଏବଂ କଅଁଳ ଚଳ ରୁଆର ମୂଲ୍ୟ ଅତି ଅଧିକ ।

"ଗୁଣ୍ଡିରୁ ବାହୁଡ଼ା ମଧ୍ୟରେ ପାଣି
ଗୋଜ ଲଙ୍ଗଳକୁ ଖୋଜିବୁ ପୁଣି" ।

ଜନନ ଅବସ୍ଥା ( Generative—stage )

ଜନନ ଅବସ୍ଥା ଦୁଇଟି ପ୍ରକ୍ରମରେ ବିଭକ୍ତ । ଧାନ ଗଣ୍ଡିଗୁଣ୍ଡ଼ ଲିଙ୍ଗ ଧରିବା ଯାଏ ପ୍ରଥମ ପ୍ରକ୍ରମ । ଧାନ କେଣ୍ଡା ବାହାରି ଫୁଲ ଉଡ଼େଇ, କ୍ଷୀର ଡୋକି ଧାନ ପାଚିବା ଯାଏ ଦ୍ୱିତୀୟ ପ୍ରକ୍ରମ । ଲିଙ୍ଗ ଧରିଲେ ଧାନ ଗଣ୍ଡିଗୁଣ୍ଡେ । ପବ ଲମ୍ବେ । ଧାନଗଛ ଉଚ୍ଚରେ ବଢ଼େ । ଲିଙ୍ଗଧରି ଧାନଗଛ ବଢ଼ିବା ଉପରେ ଖେଡ଼ର ଲମ୍ବା ଏବଂ ଧାନ ସଂଖ୍ୟା ନିର୍ଭର କରେ । ତେଣୁ ଲିଙ୍ଗଧରି ଥୋଡ଼ ହେବାଯାଏ ଧାନ ଏକ ଘନ୍ତ୍ରସନ୍ଧି ଦେଇଯାଏ । ଏତିକବେଳେ ଧାନ କିଆରିରେ

ପାଣି ଉଣା ବା ଅଧିକ ରହିବା ଅନୁଚିତ । ଖତ ଓ ସାର ପ୍ରୟୋଗ ମଧ୍ୟ ଆବଶ୍ୟକ ।

ଧାନର ଓଜନ ପୂଲଉଡ଼େଇ ଷୀର ଢ଼ୋକିବା ଉପରେ ନିର୍ଭର କରେ । ଏତିକି ବେଳେ ପବନ ପିଟିଲେ କିମ୍ବା ବର୍ଷା ଛୁଟି ଗୁଡ଼ିଆ ହୋଇ ପାଣି ଅଭାବ ଧରିଲେ ଧାନ ଷୀର ଢ଼ୋକେ ନାହିଁ ।ଅଗାଡ଼ି ଏବଂ କଣ୍ଢା ଧରିଯାଏ । ଏଥିଲାଗି ପ୍ରବାଦ ଅଛି—

ହେଦୁଅ ପାଣି—ପକାହାଣି
ଅଣିଣ ପାଣି—ବନ୍ଧାଛାଣି

**ଉତ୍ତାପ : –**

ଧାନ ଉଷ୍ମମଣ୍ଡଳୀୟ ଉଦ୍ଭିଦ । ଅଧିକ ଉତ୍ତାପ ଓ ଆଦ୍ରତା ଧାନ ଫସଲ ପକ୍ଷରେ ଅନୁକୂଳ ।

ଧାନ ଗଜା ହେବା ଲାଗି ୪୦ ଡିଗ୍ରୀ ସେଣ୍ଟିଗ୍ରେଡ ଉତ୍ତାପ ଅନୁକୂଳ । ୧୦-୧୨ ଡ଼ିଗ୍ରୀ ଉତ୍ତାପରୁ ଊଣା ହେଲେ ଧାନ ଗାଲେଇ ପଡ଼ି ରହେ ଏବଂ ଗଜା ହୁଏ ନାହିଁ । ୩୦ରୁ ୩୫ ଡିଗ୍ରୀ ଉତ୍ତାପ ଗଜା ଲାଗି ଅତି ଅନୁକୂଳ । ଧାନ ଖରୁଡ଼ି ବୁଣାଗଲେ ଏହା ଚାଷ ସବୁ ପଡ଼ି ରହେ । ବର୍ଷାହେଲେ ଗଜା ହୁଏ ।

ଧାନଗଛ ବଢ଼ିବା ଜଳର ଉତ୍ତାପ ୪୦ରୁ ୪୩ ଡ଼ିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପ ଅତି ଅନୁକୂଳ । ୧୩ ଡ଼ିଗ୍ରୀରୁ ଊଣା ଏବଂ ୫୦ ଡ଼ିଗ୍ରୀରୁ ଅଧିକ ଉତ୍ତାପ ଧାନଗଛ ବଢ଼ିବା ଲାଗି ପ୍ରତିକୂଳ ।

ଧାନଗଛ ପିଲମାରି ବୁଦା ଧରିବା ଲାଗି ୩୨ରୁ ୩୪ ଡ଼ିଗ୍ରୀ ସେଣ୍ଟିଗ୍ରେଡ଼ ଉତ୍ତାପ ଦରକାର । ଧାନ ଥୋଡ଼ ହୋଇ ଶୀସ ବାହାରିବା ଲାଗି ୩୦ରୁ ୩୨ ସେଣ୍ଟିଗ୍ରେଡ଼ ଉତ୍ତାପ ଅତି ଅନୁକୂଳ

———

## ଟେବୁଲ ନ ୧୦—ଓଡ଼ିଶାରେ ବିଭିନ୍ନ ମାସରେ ହାରାହାରି ମାସିକ ଉତ୍ତାପ (୧)

### ( ଡ଼ିଗ୍ରି ସେଣ୍ଟିଗ୍ରେଡ଼ )

| ମାସ | ସକାଳ ୭ଟାରେ | ଦ୍ୱିପ୍ରହର ୨ଟାବେଳେ | ମାଟିର ଉତ୍ତାପ | |
|---|---|---|---|---|
| | | | ସକାଳ ୭ଟାରେ | ଦ୍ୱିପ୍ରହର ୨ଟାବେଳେ |
| ବୈଶାଖ | ୨୭.୩ | ୩୮.୩ | ୩୦.୫ | ୪୦.୮ |
| ଜ୍ୟେଷ୍ଠ | ୨୯.୬ | ୩୭.୪ | ୩୩.୫ | ୩୯.୮ |
| ଆଷାଢ଼ | ୨୯.୭ | ୩୫.୪ | ୩୨.୩ | ୩୭.୨ |
| ଶ୍ରାବଣ | ୨୭.୨ | ୨୯.୯ | ୨୮.୩ | ୩୧.୧ |
| ଭାଦ୍ରବ | ୨୭.୧ | ୩୦.୧ | ୨୮.୪ | ୩୧.୧ |
| ଆଶ୍ୱିନ | ୨୬.୩ | ୩୦.୪ | ୨୭.୬ | ୩୧.[illegible] |
| କାର୍ତ୍ତିକ | ୨୫.୫ | ୩୦.୦ | ୨୬.୬ | ୩୦.[illegible] |
| ମାର୍ଗଶୀର | ୨୨.୦ | ୨୮.୩ | ୨୩.୪ | ୨୬.୭ |
| ପୌଷ | ୧୭.୩ | ୨୭.୪ | ୨୦.୧ | ୨୫.୨ |
| ମାଘ | ୧୮.୧ | ୨୯.୨ | ୨୨.୨ | ୩୦.୨ |
| ଫାଲଗୁନ | ୨୦.୨ | ୩୦.୩ | ୨୩.୫ | ୩୨.୨ |
| ଚୈତ୍ର | ୨୨.୭ | ୩୫.୨ | ୨୫.୯ | ୩୫.୭ |

## ଆଲୋକ

ପ୍ରତ୍ୟେକ ଉଦ୍ଭିଦର ଜୀବନରେ ଦୁଇଟି ଅବସ୍ଥା ଦେଖାଯାଏ । ଯଥା (୧) ତାପ ଅବସ୍ଥା ଏବଂ (୨) ଆଲୋକ ଅବସ୍ଥା ।

---

(୧) ଭୁବନେଶ୍ୱର କୃଷି ଗବେଷଣା କେନ୍ଦ୍ରରେ ରଖା ଯାଉଥିବା ହିସାବ ।

ଚାପ ଅବସ୍ଥାରେ ଗଛର ଅଙ୍ଗ ପ୍ରତ୍ୟଙ୍ଗ ବଢ଼େ । ଏହା ଗଛର ବୃଦ୍ଧି ଅବସ୍ଥା । ଏହି ବୃଦ୍ଧି ଅବସ୍ଥାରେ ବାୟୁମଣ୍ଡଳର ଉତ୍ତାପ ପ୍ରଭାବ ଅତି ଅଧିକ। ବୃଦ୍ଧି ଅବସ୍ଥା ପରେ ଗଛ ଫୁଲଫଳ ଧରେ । ଏହା ଗଛର ବିକାଶ ଅବସ୍ଥା । ଏହି ବିକାଶ ଅବସ୍ଥା ଉପରେ ଦିବାଲୋକର ପ୍ରଭାବ ଅତି ଅଧିକ ।

ବର୍ଷସାରା ଦିନରାତି ସମାନ ନୁହେଁ । ପୃଥିବୀ ନଟୁ ଘୂରିଲା ଭଳି ନିଜ ମେରୁଦଣ୍ଡ ଚାରିପାଖରେ ପ୍ରତି ଚବିଶ ଘଣ୍ଟାରେ ଥରେ ଲେଖାଏଁ ଘୁରେ । ଏହି ଘୂରିବା ହେତୁ ଦିନରାତି ହୁଏ । ପୃଥିବୀ ନିଜ ମେରୁଦଣ୍ଡ ଚାରିପାଖରେ ଘୂରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ଚାରିପାଖରେ ବର୍ଷକେ ଥରେ ଘୁରିଆସେ । ଏହାକୁ "ବାର୍ଷିକ ଗତି" କହନ୍ତି । ଏହି ବାର୍ଷିକ ଗତିହେତୁ ପୃଥିବୀ ସୂର୍ଯ୍ୟ ନିକଟରେ ବା ଦୂରରେ ରହେ । ତେଣୁ ଋତୁ ପରିବର୍ତ୍ତନ ଘଟେ ।

ମାର୍ଚ୍ଚ ମାସ ୨୧ ତାରିଖ ଦିନ ସୂର୍ଯ୍ୟ ବିଷୁବରେଖା ଉପରେ ରହନ୍ତି । ତେଣୁ ପୃଥିବୀରେ ଦିନରାତି ସମାନ ହୁଏ । ଏହି ଦିନଠାରୁ ସୂର୍ଯ୍ୟ ଉତ୍ତର ଦିଗକୁ ମାଡ଼ି ଉଦୟ ହୁଅନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ଆସ୍ତେ ଆସ୍ତେ ବଢ଼େ ଏବଂ ରାତି କ୍ରମେ କ୍ରମେ ଛୋଟ ହୁଏ । ଜୁନମାସ ୨୧ ତାରିଖଦିନ ସୂର୍ଯ୍ୟ କର୍କଟକ୍ରାନ୍ତି ଉପରେ ରୁହନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ସବୁଠାରୁ ବଡ଼ ଏବଂ ରାତି ସବୁଠାରୁ ଛୋଟ ହୁଏ । ଏହି ଦିନଠାରୁ ସୂର୍ଯ୍ୟ ଦକ୍ଷିଣକୁ ତଳ ଉଦୟ ହୁଅନ୍ତି । ସୂର୍ଯ୍ୟଙ୍କର ପ୍ରତୀୟମାନ ଦକ୍ଷିଣାୟନ ଗତି ଆରମ୍ଭ ହୁଏ । ସେପ୍‌ଟେମ୍ବର ୨୩ ତାରିଖ ଦିନ ସୂର୍ଯ୍ୟ ବିଷୁବରେଖାର ସୁ-ବିନ୍ଦୁରେ ରୁହନ୍ତି । ଏହିଦିନ "ଜଳବିଷୁବ" କୁହାଯାଏ ଏବଂ ଦିନରାତି ସମାନ ହୁଏ ।

ସେପ୍‌ଟେମ୍ବର ୨୩ ତାରିଖ ପରେ ସୂର୍ଯ୍ୟ କ୍ରମଶଃ ଦକ୍ଷିଣ ଆଡ଼କୁ ଗତି କରନ୍ତି । ତେଣୁ ଉତ୍ତର ଗୋଲାର୍ଦ୍ଧରେ ଦିନ ଛୋଟ ହୁଏ ଏବଂ ରାତି ବଡ଼ ହୁଏ । ଡିସେମ୍ବର ୨୧ ତାରିଖ ଦିନ ସୂର୍ଯ୍ୟ ମକରକ୍ରାନ୍ତି ପାଖରେ ପହଞ୍ଚନ୍ତି । ଏହିଦିନ ଉତ୍ତର ଗୋଲାର୍ଦ୍ଧରେ ଦିନ ସବୁଠାରୁ ଛୋଟ ଏବଂ ରାତି ସବୁଠାରୁ ବଡ଼ । ଏହାକୁ ଦକ୍ଷିଣ ଅୟନାନ୍ତ ଦିବସ କୁହାଯାଏ । ଡିସେମ୍ବର ୨୧ ତାରିଖ ପରେ ଦିନ ଆସ୍ତେ ଆସ୍ତେ ବଢ଼େ, ରାତି ଆସ୍ତେ ଆସ୍ତେ ଛୋଟ ହୁଏ । ମାର୍ଚ୍ଚ ୨୧ ତାରିଖ ଦିନ ମଧ୍ୟାହ୍ନ ସୂର୍ଯ୍ୟ ପୁଣି ବିଷୁବ-ରେଖାର ଥି-ବିନ୍ଦୁରେ ରୁହନ୍ତି । ତେଣୁ ଦିନରାତି ସମାନ ହୁଏ ।

ସୁତରାଂ ଉତ୍ତର ଗୋଲାର୍ଦ୍ଧରେ ମାର୍ଚ୍ଚ ୨୧ ତାରିଖରୁ ସେପ୍‌ଟେମ୍ବର ୨୩ ତାରିଖଯାଏ ଛଅମାସ ଦିନବଡ଼ ଓ ରାତି ସାନ । ସେପ୍‌ଟେମ୍ବର ୨୪ ତାରିଖରୁ ମାର୍ଚ୍ଚ ୨୦ ତାରିଖଯାଏ ଛଅମାସ ଦିନ ଛୋଟ ଓ ରାତି ବଡ଼ । ପ୍ରବାଦ ଅଛି—

"ମକର, ଦିନ ବଢ଼େ ଟିକର"

ମକରସଂକ୍ରାନ୍ତିଠାରୁ ଦିନ ଆସ୍ତେ ଆସ୍ତେ ବଢ଼େ । ଓଡ଼ିଶା ରାଜ୍ୟରେ ବିଭିନ୍ନ ମାସରେ ଦିନ କେତେ ଘଣ୍ଟା ରୁହେ ତାହା ୧୧ ନମ୍ବର ଟେବୁଲରେ ଦିଆଯାଇଛି ।

# ଟେବୁଲ ନ ୧୧—ଓଡ଼ିଶାରେ ଦିବାଲୋକ

| ମାସ | ସଂକ୍ରାନ୍ତି | ଦିନ କେତେ ଘଣ୍ଟା | | |
|---|---|---|---|---|
| ବୈଶାଖ | ମେଷ (ବିଷୁବ) | ଘ୧୨-୧୨ ” | ଘ୧୨-୪୪ ” | ଦିନ ବଢ଼େ |
| ଜ୍ୟେଷ୍ଠ | ବୃଷ | ଘ୧୨-୪୫ ” | ଘ୧୩-୮ ” | ” |
| ଆଷାଢ଼ | ମିଥୁନ (ରଜ) | ଘ୧୩-୯ ” | ଘ୧୩-୧୨ ” | ” ” |
| ଶ୍ରାବଣ | କର୍କଟ | ଘ୧୩-୧୨ ” | ଘ୧୨-୫୭ ” | |
| ଭାଦ୍ରବ | ସିଂହ | ଘ୧୨-୫୬ ” | ଘ୧୨-୨୭ ” | ” |
| ଆଶ୍ୱିନ | କନ୍ୟା | ଘ୧୨-୨୪ ” | ଘ୧୧-୫୨ ” | ରାତି ବଢ଼େ ଦିନ ଛୋଟ |
| କାର୍ତ୍ତିକ | ତୁଳ ଗର୍ଭଣା | ଘ୧୧-୫୨ ” | ଘ୧୧-୧୮ ” | ” |
| ମାର୍ଗଶୀର | ବିଚ୍ଛା | ଘ୧୧-୧୬ ” | ଘ୧୦-୫୩ ” | ” |
| ପୌଷ | ଧନୁ | ଘ୧୦-୫୨ ” | ଘ୧୦-୪୮ ” | ” |
| ମାଘ | ମକର | ଘ୧୦-୪୮ ମିନିଟରୁ | ଘ୧୧-୭ ମିନିଟ | ରାତି ବଢ଼େ ଦିନ ଛୋଟ |
| ଫାଲଗୁନ | କୁମ୍ଭ | ଘ୧୧-୮ ” | ଘ୧୧-୩୬ ” | ” ” |
| ଚୈତ୍ର | ମୀନ | ଘ୧୧-୩୬ ” | ଘ୧୨-୧୧ ” | ଦିନ ବଢ଼େ |

ଧାନ ଜ୍ୟେଷ୍ଠମାସ ଶେଷ ବା ମିଥୁନ ସଂକ୍ରାନ୍ତି ବେଳକୁ ବୁଣା ଶେଷ ହୁଏ। ସେତେବେଳକୁ ଦିବାଲୋକ ଘ ୧୩ଣ୍ଟାରୁ ଅଧିକଥାଏ ଏବଂ ବାୟୁମଣ୍ଡଳ ଉତ୍ତାପ ଡିଗ୍ରୀଥାଏ। ଆଶ୍ବିନ ମାସ କନ୍ୟା ସଂକ୍ରାନ୍ତି ବେଳକୁ ଦିବାଲୋକ ଘ ୧୨ଣ୍ଟାରୁ ଊଣାହୁଏ ଏବଂ ବାୟୁମଣ୍ଡଳ ଉତ୍ତାପ ଡ଼ିଗ୍ରୀ ରହେ। ଘ ୧୨ଣ୍ଟାରୁ ଊର୍ଦ୍ଧ୍ବ ଦିବାଲୋକରେ ଧାନଗଛ ପିଲମାର ବୁଦାଧରେ। ଦିବା ଲୋକ କମିଯିବାରୁ ଧାନଗଛ ବୁଦା ନମାର ଡେଙ୍ଗରେ ବଢ଼େ ଏବଂ ଲିଙ୍ଗ ଧରେ। ତୁଳ ସଂକ୍ରାନ୍ତିକୁ ଧାନ ଥୋଡ଼ ଧରେ। ଧାନକେଣ୍ଡା ନଡ଼ା ଗର୍ଭରେ ରହୁଥିବାରୁ ଏହାକୁ "ଗର୍ଭଣା ସଂକ୍ରାନ୍ତି" କୁହଯାଏ। ତେଣୁ ଧାନ ଯେତେ ଆଗରୁ ବୁଣା ବା ରୁଆ ବା ଯେତେ ପଛରେ ବୁଣ ଓ ରୁଆ ଦିବାଲୋକ ୧୨ ଘଣ୍ଟାରୁ ଊଣାପଡ଼ିଲେ ଧାନ ଥୋଡ଼ ହୋଇ ସୀସା ମକାଇବ। ଏଥିଲାଗି ପ୍ରବାଦ ଅଛି

"ଆଗେ ବୁଣ, ପଛେ ବୁଣ
ଗର୍ଭଣାକୁ ଝୁଣ୍ ଝୁଣ୍"।

ଉତ୍ତାପ ଏବଂ ଆଲୋକର ତାରତମ୍ୟକୁ ସଚେତ ରହୁଥିବା ଧାନକୁ ଦୁଇ ଶ୍ରେଣୀରେ ଭାଗ କରାଯାଇ ଥାଏ। ଯଥା

(୧) ସମୟାନୁବର୍ତ୍ତୀ (Season bound)
(୨) କାଳ ଅନୁବର୍ତ୍ତୀ (Period bound)

**ସମୟାନୁବର୍ତ୍ତୀ**—(୧) ଏହି ଶ୍ରେଣୀର ଧାନ ବର୍ଷର ନିର୍ଦ୍ଦିଷ୍ଟ ସମୟରେ ଥୋଡ଼ ହୋଇ ସୀମା ବାହାରିବ। ସେହି ନିର୍ଦ୍ଦିଷ୍ଟ ଋତୁ ବା ସମୟ ଆଗରୁ ବୁଣା ବା ରୁଆ ଯାଏ ଆସେନାହିଁ। ଏମାନଙ୍କ ଜୀବନରେ ଆଲୋକର ପ୍ରଭାବ ଅତି ଅଧିକ। ଦିବାଲୋକ ବଢ଼ିଥିବାବେଳେ ପିଲାମାର ବୁଦାଧରି ବଢ଼ିବ। ଦିନ ଛୋଟ ହୋଇ

ଅସିଲେ ଥୋଡ଼ହୋଇ ଶୀଷ ପକାଇବେ । ଯଥା ଲଘୁ ଓ ଶାରଦ ଧାନ । ଏମାନଙ୍କ ଜୀବମାରେ

"ଆଗେ ବୁଣ, ପଛେ ବୁଣ
ଗର୍ଭଣାକୁ ଝୁଣ୍ ଝୁଣ୍"

**କାଳଅନୁବର୍ତ୍ତୀ**—(୨) ଏହି ଶ୍ରେଣୀ ଧାନ ବର୍ଷର ଯେ କୌଣସି ସମୟରେ ବୁଣା ଯାଇ ପାରନ୍ତି । ମାତ୍ର ସେମାନଙ୍କର ଜୀବନଚକ୍ର ପୂର୍ଣ୍ଣ ହେବା ଲଗି ଯେତେ ଦିନ ଆବଶ୍ୟକ ସେତିକଦିନ ଭୋଗ ହେଲେ ସେମାନେ ଥୋଡ଼ ଧରି ଫୁଲ ଉଡ଼ାଇବେ । ଏହି ଶ୍ରେଣୀର ଧାନ ଉପରେ ଋତୁର ପ୍ରଭାବ ନଥାଏ । ଉତ୍ତାପର ପ୍ରଭାବ ଅଧିକ । ଚଆଳ ଏବଂ ଡାଳୁଅ ଧାନ ଏହି ଶ୍ରେଣୀଭୁକ୍ତ । ଏମାନେ ବର୍ଷର ଯେ କୌଣସି ସମୟରେ ବୁଣା ବା ରୁଆ ଯାଇପାରନ୍ତି । ଯଥା—ପିଆ, କାସୁଣ୍ଡା, ସଅଁର, ନଗିନା ୧୩୬, ଏମ୍: ଟି: ଇଜ୍୧୫ ଅନ୍ୟାନ୍ୟ ଚଆଳ ଏବଂ ଡାଳୁଅ ଧାନ ।

## ଧାନର ଗୁରୁତ୍ୱ

୧—ଧାନଠୁଁ ବଳ ନାହିଁ ଧନ
ଧାନ ନମିଳଲେ ଜୀବ ଜୀବନ ॥
(ବଡ଼ସାହି, ମୟୂରଭଞ୍ଜ)

୨—ଛନ୍ଦେ କଉଡ଼, ବନ୍ଧେ ଧାନ ॥
(କରଞ୍ଜିଆ, ମୟୂରଭଞ୍ଜ)

୩—ଲକ୍ଷ ଟଙ୍କା, ମହଣ ମହଣ
ଧାନ ବକଚ ବେଳେ ରଖେ ମାନ ॥
(ସମ୍ବଲପୁର)

୪—ଧାନ ପଣିକେ, ସୁନା କଣିକେ

୫—ଆମ୍ବ, ପଣସ ଅଢ଼େଇଦିନ
ହୁଆ ଦମ୍ଭକର ଧାନକୁ ଚାହିଁ ॥
(କଲଣ୍ଟର, କଟକ)

୬— ସବୁ ହକ କର ଧାନ
ଧାନ ହକ ନକର ଆନ ।
ତୋ କାନ ହଲହଲକା ଯିବ
ମୋ ପାଖେ ଝୋକେଇ ଥିବ ॥

———

## (୨) ବିଭିନ୍ନ ପ୍ରକାର ଧାନ

### (Rice Varieties)

ଧାନ ତୃଣଜାତୀୟ ଉଦ୍ଭିଦ । ଏହା 'ତୃଣ' ବା "ଗ୍ରାମିନି" ପରିବାର ଭୁକ୍ତ । ଏହି ପରିବାରରେ "ଓରାଇଜା" ଏକ ଉପ-ଜାତି । ଏହି "ଓରାଇଜା" ଉପଜାତିରେ ୨୩ଟି ଜାତିର ଧାନ ରହିଛି । ଏହି ୨୩ଟି ମଧ୍ୟରୁ ୨୧ଟି ଆରଣ୍ୟକ ଏବଂ ୨ଟି ଚାଷ କରାଯାଉଛି । ଏହି ୨ଟି ଚାଷ ଗୋଷ୍ଠିରୁ ଗୋଟିଏ ଗୋଷ୍ଠି "ସାଟିଭା" ଏବଂ ଅନ୍ୟଟି "ଗ୍ଲାବେରିମା" ନାମରେ ଅଭିହିତ । ଏସିଆ ମହାଦେଶ, ଇଉରୋପ ଏବଂ ଆମେରିକାରେ ଚାଷ କରା-

ଯାଉଥିବା ଧାନଗୁଡ଼ିକ "ସାଟିଭା" ଗୋଷ୍ଠି ଏବଂ ପଶ୍ଚିମ ଆଫ୍ରିକାରେ ଚାଷ ଧାନ "ଗ୍ଲାବେରିମା" ଗୋଷ୍ଠି ଅନ୍ତର୍ଗତ ।

'ସାଟିଭା' ଗୋଷ୍ଠୀ ଆରଣ୍ୟକ ବା ଦଣ୍ଡାବାଲୁଙ୍ଗା "ପେରେନିଜ" ମା'ଠାରୁ ଜନ୍ମ । ଆଦିମ ମାନବ ଏହି ନିବାର ବା ବାଲୁଙ୍ଗାଧାନ ସଂଗ୍ରହ କରୁଥିଲେ । କାଳକ୍ରମେ ଏହି ନିବାରରୁ ଚାଷଧାନ ବାହାର କଲେ । ଯୁଗ ଯୁଗ ଧରି ଚାଷ ଫଳରେ ବିଭିନ୍ନ ଜଳବାୟୁ ଏବଂ ପାରିପାର୍ଶ୍ୱିକ ଅବସ୍ଥାକୁ ସହିବା ଭଳି ଧାନ ବାଛି ହୋଇ ଉଠିଲା । ଭାରତବର୍ଷରେ ପ୍ରାୟ ୪,୦୦୦ ପ୍ରକାରର ଏବଂ ଓଡ଼ିଶାରେ ପ୍ରାୟ ୨,୦୦୦ ପ୍ରକାରର ଧାନ ଚାଷ କରାଯାଉଛି ।

ଧାନ କହିଲେ ପୂର୍ବେ ଦଶ ପ୍ରକାର ଶସ୍ୟକୁ ବୁଝାଉଥିଲା । ବୃହଦାରଣ୍ୟକ ଉପନିଷଦରେ ୧୦ ପ୍ରକାର ଶସ୍ୟ ଭାରତବର୍ଷରେ ଆମଦାନି କରାଯାଉଥିବାର ଉଲ୍ଲେଖ ଅଛି ।

ଦଶ ଗ୍ରାମାଣି ଧାନ୍ୟାହି ଭବନ୍ତି
ବ୍ରୀହି ଯବାସ୍ତିଳମାଷା ଅଣୁପ୍ରିୟଙ୍ଗବୋ
ଗୋଧୂମଶ୍ଚ ମସୂରଶ୍ଚ ଖଲ୍ୱାଶ୍ଚ ଖଳକୁଳାଶ୍ଚ
ତାନ୍ ପିଷ୍ଟାନ୍, ଦଧୀନି, ମଧୂନି, ଘୃତ
ଉପସଞ୍ଚତି, ଆର୍ଯ୍ୟସ୍ୟ ଜୁହୋତି ।

ବୃହଦାରଣ୍ୟକ ଉପନିଷଦ—୬-୧-୧୩

ଅର୍ଥ—ଧାନ, ଯବ, ଚେଲବୀଜ, ବିରି (ମାଷ), ଶୁଆଁ [ଅଣୁ], କାଙ୍ଗୁ [ହରଡ଼], ଗହମ, ମସୁର, ଖଲ୍ୱ ଏବଂ କୋଳଥ ଯଜ୍ଞରେ ଆହୁତି ଦିଆଯାଉଥିଲା ।

ଯଜୁର୍ବେଦରେ ୧୨ ପ୍ରକାର ଶସ୍ୟ ଯଜ୍ଞରେ ଆହୁତି ଦିଆଯିବାର ଉଲ୍ଲେଖ ରହିଛି ।

ବ୍ରୀହୟଶ୍ଚ, ମେ ଯବାଶ୍ଚ, ମେ ମାଷାଶ୍ଚ, ମେ ତିଲାଶ୍ଚ, ମେ ମୁଦ୍ଗଶ୍ଚ, ମେ ଖଲ୍ୱଶ୍ଚ, ମେ ପ୍ରିୟଙ୍ଗବଶ୍ଚ, ମେଽଣବଶ୍ଚ, ମେ ଶ୍ୟାମକାଶ୍ଚ, ମେ ଯଜ୍ଞେ କଳ୍ପନ୍ତାଂ । ଯଜୁଃ ୧୮।୧୨

ବୃହଦାରଣ୍ୟ ଉପନିଷଦ ଅପେକ୍ଷା ଯଜୁଃବେଦରେ ମୁଗ, ଗ୍ରାମ୍ୟତୃଣ ( ଶ୍ୟାମକାଃ ) ଏବଂ ନୀବାର ( ଆରଣ୍ୟତୃଣ ) ଅଧିକ ରହିଛି ।

ଆୟୁର୍ବେଦରେ ୫ ପ୍ରକାର ଧାନର ଉଲ୍ଲେଖ ରହିଛି । ଯଥା

ଶାଲୟୋ ରକ୍ତଶାଲ୍ୟାଦ୍ୟା ବ୍ରୀହୟଃ ଯଷ୍ଟିକାଦୟଃ
ମୁଦ୍ଗାଦି ଦ୍ୱୈଦଳଂ ଶୈମ୍ବ୍ୟଂ କଙ୍ଗ୍ୱାଦି ତୃଣଧାନ୍ୟକମ୍
କ୍ଷୁଦ୍ରଧାନ୍ୟଂ କୁଧାନ୍ୟନ୍ତୁ ଶୁକଧାନ୍ୟଂ ଯବାଦିକମ୍
( ମଦନପାଲ ନିଘଣ୍ଟୁ-ଧୃତ ଧାନ୍ୟାଦିବର୍ଗ ।

ଅର୍ଥ—୧—ଶାଳିଧାନ୍ୟ—ଧାନ, ରକ୍ତଶାଳି

୨—ବ୍ରୀହିଧାନ—ଷାଠିକ

୩—ଦ୍ୱୈଦଳ ବା ଶିମ୍ବିଧାନ—ଡାଲି ଫସଲ,

୪—କଙ୍ଗୁଧାନ—ତୃଣଧାନ, କୁଧାନ, ଶୁଆଁ

୫—ଶୁକଧାନ ବା ଶୂଙ୍ଗ ବିଶିଷ୍ଟ ଧାନ—ଗହମ, ଯଅ ଇତ୍ୟାଦି ।

**ଶାଳଧାନ୍ୟ ବା ଗୃହଧାନ୍ୟ**

ଚାଷ ଦୃଷ୍ଟିରୁ ଧାନ ଦୁଇ ଜାତିର ଅଛି । ଯଥା (୧) ଡ଼ିପ ଜମି ଧାନ ଏବଂ (୨) ଖାଲ ଜମି ଧାନ । (୧) ଡ଼ିପ ଜମି ବା ବଆଲ ଧାନ ବର୍ଷାଧାର: ମଣ୍ଡା ପାଣି ଦରକାର କରେ ନାହିଁ । ଧାନ ବୁଣିବା ଦିନରୁ ପାଚିବା ଯାଏ ଜଳ ବେଶୀ ଦରକାର କରେ ନାହିଁ । କିନ୍ତୁ ଖାଲ ଜମି ଧାନ ବୁଣା, ବଢ଼ୁଣ୍ଡା ଓ ରୁଆ ଦିନଠାରୁ ପାଚି କଟା ଯିବାଯାଏ ପାଣି ଦରକାର କରେ ।

ଋତୁ ଭେଦରେ ଓଡ଼ିଶାରେ ଚାଷ କରାଯାଉଥିବା ଧାନଗୁଡ଼ିକୁ ତିନିଟି ଶ୍ରେଣୀରେ ଭାଗ କରାଯାଇଥାଏ । ଯଥା—

(୧) ବଆଲ—ଜ୍ୟେଷ୍ଠମାସରେ ବୁଣାଯାଇ ଭାଦ୍ରବ ଶେଷରେ କଟାଯାଏ ।

---

(୧) It is well well known that there are two distinct forms in the cultivated rice is upland or lowland rice. The latter is more or less hydrophytic whereas the former mesophytic, Capable of being grown in the fields without artificial supply of water by irrigation. The water requiremeuts of the two differ in a marked degree with coressponding differences in the anatomical and physiological characlers.

Japonica Rice—Its breeding and cutture by Isaburo Nagai. 1956, P 124.

(୨) ଶାରଦ—ଜ୍ୟୈଷ୍ଠ ମାସରେ ଗଚ୍ଛୁଡ଼ ବା ବଲୁଆବୁଣା ଯାଇ ଆଷାଢ଼—ଶ୍ରାବଣରେ ବିଦ୍ଧଡ଼ାଯାଏ । ନଚେତ୍ ଆଷାଢ଼—ଶ୍ରାବଣରେ ଚଳ ରୁଆଯାଏ । ଧାନ କାର୍ତ୍ତିକରୁ ପୌଷ ପୂର୍ଣ୍ଣିମାଯାଏ କଟାଯାଏ । ଏହି ଧାନ ଲଘୁ ଏବଂ ଗୁରୁ ଦୁଇ ଶ୍ରେଣୀରେ ବିଭକ୍ତ । ଲଘୁ ଡିପା ଜମିରେ ଏବଂ ଗୁରୁ ବା ବଡ଼ଶାରଦ ଖାଲ ଜମିରେ ଚାଷ କରାଯାଏ ।

(୩) ଡାଲୁଅ—ପୌଷ-ମାଘରେ ରୁଆ ବା ବୁଣାଯାଇ ବୈଶାଖ-ଜ୍ୟେଷ୍ଠରେ କଟାଯାଏ । ଧାନଗଛ ଛୋଟ ।

ଡାଆଳି ଧାନ "କାଳ ଅନୁବର୍ତ୍ତୀ" । ବର୍ଷର ଯେ କୌଣସି ସମୟରେ ବୁଣ ସେ ଧାନ ଫୁଲ ଉଠେଇବାକୁ ଯେତେକ ଦିନ ଦରକାର ସେତିକ ଦିନ ହେଲେ ଥୋଡ଼ ବାହାରିବ । ଏହି ଧାନ ଡାଲୁଅ ରୂପେ ବୁଣାଯାଏ ।

ଶାରଦଧାନ "ସମୟାନୁବର୍ତ୍ତୀ" ବା "ଋତୁ ଅନୁବର୍ତ୍ତୀ" । ଯେତେ ଆଗରୁ ବା ପଛ ବୁଣିଯାଏ ସମୟ ଆସିଲେ ଧାନ ଥୋର ହେବ । ଏହି ଶ୍ରେଣୀର ଧାନକୁ ଫୁଲ ଉଠେଇବା ଦୃଷ୍ଟିରୁ ୩ଟି ଶ୍ରେଣୀରେ ଭାଗ କରାଯାଏ । ଯଥା:

(୧) ଲଘୁ—ଦଶହରାକୁ ଧାନ ବାହାରେ

(୨) ବଡ଼—ଦୀପାଳି ଅମାବାସ୍ୟା ସୁଦ୍ଧା ଥୋଡ଼ ହୁଏ ।

(୩) ପାଣି ବା ଖାଲ—କାର୍ତ୍ତିକ ପୂର୍ଣ୍ଣିମାକୁ ବାହାରେ ।

କୃଷି ବଂଶ ପରମ୍ପରା କୃଷକରେ ଆସି ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥାକୁ ଧରି ଫଳିବା ଧାନ ବାଛି ନେଇଛି । ସେହି-ବହୁ ବର୍ଷ ଧାନ ଉପରେ ପ୍ରବାଦମାନ ଗଢ଼ିହୋଇ ଉଠିଛି ।

ଢଆଳ ଧାନ (Aus paddy)

ବଆଳ ଧାନ ବେଶୀ ପାଣି ଦରକାର କରେ ନାହିଁ । ବେଶୀ ଖତ ଦରକାର କରେ । ଷାଠିଏ ଦିନରେ ପାଚଯାଏ । ବଡ଼ବଆଳ ୧୨୦ଦିନ ନିଏ ।

୧ । ଧାନ କଚଥିବୁ ଆଶୁ
ସେ ପାଣିରେ ପଛେ ଭାସୁ । (ଭଦ୍ରକ, ବାଲେଶ୍ୱର)

୨ । ଧାନର ନାମ ଷାଠିଆ
ଷାଠିଏ ଦିନରେ କାଟି ଖା' ॥ (ଜଗତ୍ସିଂହପୁର, କଟକ)

୩ । ବାନ୍ଧ ଆଗେ ଆଳ, ରୁଆ ତେବେ ଶାଳ
ନାହିଁ ଯଦି ଫଳ ଫଳେ
ଗାଳଦେବୁ ଖନା ବୋଲେ ॥

ଅର୍ଥ—ବଡ଼ ବଆଳ ଧାନ ହେଉବାକୁ ହେଲେ କ୍ଷେତରେ ପାଣି ରଖିବାକୁ ବଡ଼ ବଡ଼ ଆଳ ଭିଡ଼ିବାକୁ ହେବ ।

ଲଘୁଧାନ ( Autumn paddy )

ମୋଟର ଏବଂ ରଙ୍ଗିଆବାଇ ଉତ୍କୃଷ୍ଟ ଲଘୁଧାନ । ଲଘୁଧାନ ସୁକୁମାରିଆ ଏବଂ ସାଧାରଣତଃ ସରୁ । ଧାନ ଧଳା, ନଚେତ୍ ରଙ୍ଗିଆ । ୧୪୦, ୮୧୨, ୫୭, ୧୧୪୫, ୪୫୨ ନମ୍ବର ଧାନ ଲଘୁ ପାଗିଆ ଉତ୍କୃଷ୍ଟ ଧାନ ।

୧ । ଧାନ ମଧ୍ୟରେ ମୋଟର
ମନୁଷ୍ୟ ମଧ୍ୟରେ ନାଉର ଶ୍ରେଷ୍ଠର

୨ । ଧାନ ନାଁ ରଙ୍ଗିଆବାଇ
ମତେ ନରୁଣ୍ଡକୁ ଚଷାଭାଇ !
ହାତେ ଲମ୍ବ ଗୁଡ଼ବ ଶୀଷା
ଦେଖି ଝୁରୁ (ମରୁ) ଥିବେ ଆଇପଡ଼ଶା

ଅର୍ଥ—ରଙ୍ଗିଆ ବଇ ଧାନ ପ୍ରଚୁର ପରିମାଣରେ ଫଳେ ।

୩ । ପାହାଡ଼ ମୁଣ୍ଡାକୁ ସୁନାଖାଡ଼ ଭାଇ
ଗୃଷକରିଥିଲେ ଗୃଷୀ ମାତଇ ( ଭିକ୍ଷ୍ଵଡ଼, ବାଲେଶ୍ଵର)

ଅର୍ଥ—ସୁନାଖାଡ଼ ଧାନ ବାଲେଶ୍ଵର ଜିଲାର ଉତ୍କୃଷ୍ଟ ସରୁଧାନ ।

ବଡ଼ଧାନ (Winter paddy)

୧ । ଧାନ କରିବ ଗରୁ
ସେ ପଛେ ଅଧେ ମରୁ ।

୨ । ଧାନ କରିବ ଓଅଁର
ମୂଳିଆ କରିବ ଶଅର
ଜମି କରିବ ଜୋର
ହୁଡ଼ କରିବ ଘର
( ସାଲେପୁର, କଟକ )

ଅର୍ଥ—ଓଅଁର ଧାନ, ଶଅର ମୂଳିଆ ଓ ଖାଲ ଜମି ଉତ୍କୃଷ୍ଟ ।

୩ । ଘରକୁ ଘରଣୀ
ବଳକୁ ହରଣୀ
ବସୁଧା ବରଦେବ

ଗଜା କେତେ ଉଣ୍ଡିନେବ ? (ଭଦ୍ରକ, ବାଲେଶ୍ବର)

୩ । ଧାନ କଉଳା, ବନ୍ଧୁ ମଉଳା

ଅର୍ଥ—କଉଳା ଧାନ ମଉଳା ପରି ଉତ୍କୃଷ୍ଟ ।

୪ । ଧାନଯାକରେ ମକର

କେଭେଁ ନୁହେଁ ନାଁକର

ଯେବେ ହେବ ନାଁକର ।

ତେବେ ହେବ ଖପର ।

ଅର୍ଥ—ମକର ଧାନ ଭଲ ଫଳେ । କିନ୍ତୁ ଫୁଲ ଜଡ଼େଇବା ବେଳେ ପବନ ହେଲେ କିମ୍ବା ପାଗଯୋଗ ଖରାପ ହେଲେ ଅଗାଡ଼ି ଧରିଯାଏ ।

୬ । ଧାନ ନାଁ ନରସିଂହ ଭୋଗ

ଘଇତା ଅରଜଲେ ମାଇପକୁ ଯୋଗ

ଅର୍ଥ—ନରସିଂହ ଭୋଗ ଅତି ସରୁଧାନ । ସରୁ ଗୁଣ୍ଡଲ ଭାତ ମୂଲିଆମାନେ ସୁଖପାନ୍ତି ନାହିଁ । ମୂଲିଆ ଆଉ ବୃଷୀ ଭଲ ନ ପାଇବାରୁ ସେ ଗୁଣ୍ଡଲ ଭାତ ଘରର ସ୍ତ୍ରୀଲୋକମାନେ ପଖାଳ ରାନ୍ଧି ଖାନ୍ତି ।

ଖାଲ ଜମି ଧାନ (Deep water paddy)

୧ । ଖାଲ ଜମିରେ ରବଣା

ବୁଣିଥିଲେ କେଭେଁ ନହେବ କଣା ॥

୨ । ଗଡ଼ର ବଲକୁ କୋଇଲା ବାଇ

ବଢ଼ି ପାଣି ହେଲେ ନ ଯାଏ ଧୋଇ ॥

୩ । କଲଙ୍କ (କନକ) ବଢର ଧାନ
ହୁଏନାହିଁ ଲୋକସାନ ॥

୪ । ରବଣା ଧାନ ବାଳୁଙ୍ଗା ପତ୍ର
ଛାଳୁ ଗଣ୍ଡ ପାଣିରେ ବୁଣିବା ସତ୍ର ॥

ଅର୍ଥ—ରବଣା ଧାନର କେଣ୍ଡା ବାଳୁଙ୍ଗାଧାନ କେଣ୍ଡାପରି ଝୁଣ୍ଟିଥାଏ ବାଳୁଙ୍ଗା ପରି ଏହି ଧାନ ଖାଲ ଜମିରେ ହୁଏ ।

୫ । ଧାନ କୋଇଲା, କୁଟି କୁଟି ମଲ ବୋହୁ ପୋଇଲା !

ଅର୍ଥ—କୋଇଲା ବାଇ ଧାନ କୁଟି ରୂଜଳ ବାହାର କରିବାକୁ ଭାରି ପରିଶ୍ରମ ଲାଗେ ।

ଡାଲୁଅ ଧାନ (Summer paddy)

୧ । ପିଆ, ବକର, କଳାଆଁଶୁ
ଅଣୀ ଦିନରେ ଘରେ ପଶୁ ॥ (ଭଦ୍ରକ, ବାଲେଶ୍ୱର)

ଲୁଣାଜମି ଧାନ ( Salt tolerant paddy )

୧ । ଜଟିଆ, ପାଟଣୀ, କଲମଦାନ୍
ଲୁଣା ପାଣିର ସେ କାଟିବ କାନ୍ ॥

---

## (ଗ) ଧାନ କିଆରୀ ( Rice field )

ଧାନ ଜଳଜ ଉଦ୍ଭିଦ ପାଖାପାଖି ଗୁଣ ଧରିଥାଏ । ଯେକୌଣସି ଧାନ ବେଗର ପାଣିରେ ବଢ଼ି ଫଳିବା ଅସମ୍ଭବ । ଏପରିକି ଷାଠିକା ଡିଆଲି ଧାନ, ଯାହା ବୁଣିବାର ୭୦ ଦିନ ମଧ୍ୟରେ ପାଚି କଟାଯାଏ ପାଣି ଦରକାର କରେ ଏବଂ ପାଣି ଅଭାବ ହେଲେ ମରିଯାଏ । ଲଘୁ ଏବଂ ଶାରଦ ଧାନ ପାଣି ବିନା ବିହୁଡ଼ା ଓ ରୁଆ ଅସମ୍ଭବ । ଡାଲୁଅ ଧାନ ତାର ଜୀବନଟା ଯାକ ପାଣି ଦରକାର କରେ । ତେଣୁ ଧାନଚାଷଲାଗି କ୍ଷେତ ଆଗ । କ୍ଷେତ ସମତଳରସ ହେବା ଦରକାର । କୁହୁମ ପିଠିଆ ଜମିରେ ପାଣି ଭଲରୂପେ ଲାଗେନାହିଁ । ସମତଳରସ କ୍ଷେତରେ ପାଣି ସମଭାବରେ ଲାଗି ରହୁଥିବାରୁ ଘାସ ମାଡ଼ିଯାଏ ନାହିଁ । ବିହୁଡ଼ା ବା ରୁଆ ପରେ କ୍ଷେତରେ ୪-୫ ଇଞ୍ଚ ବହଳରେ ପାଣି ଠିଆ ହୋଇ ରହିଲେ କ୍ଷେତରେ ଘାସ ଜନ୍ମେ ନାହିଁ । କିଆରି ଟିକିଏ ଶୁଖିଗଲେ ଗାଣ୍ଡିଚର, ଶାରଗୁଣି ଓ ରେଚେଗଡ଼ା ଘାସ ମାଡ଼ିଯାଏ । ପାଣି ଉଣା ଏବଂ ଅଧିକ ହେଲେ ଧାନ ଗଛ ତେର ଶ୍ୱାସ ପ୍ରଶ୍ୱାସ ନେବାରେ ବାଧା ଘଟେ ।

ହିଡ଼ ଧାନ କିଆରିର ପ୍ରଧାନ ଅଙ୍ଗ । ହିଡ଼ ବା ଆଡ଼ ବ୍ୟତୀତ କ୍ଷେତରେ ପାଣି ରଖିବା ସମ୍ଭବପର ହୁଏ ନାହିଁ । ଏହି ଆଡ଼ ପକାଇ ଆଦିମ ଅଧିବାସୀ ପର୍ବତ ଦେହରେ ବହିଯାଉଥିବା ବର୍ଷା ଏବଂ ଝରଣା ପାଣିକୁ ଅଟକାଇ ଧାନ, ମାଣ୍ଡିଆ, ଜନା ଓ ଅନ୍ୟାନ ଫସଲ କୃଷକରେ । ଏହି ପ୍ରକାର "ଉପତ୍ୟକ ଚାଷ" (Terrace Cultivation) ଓଡ଼ିଶାର ଗଞ୍ଜାମ ରହୁଥିବା ପାରଳାଖେମଣ୍ଡି ମାଳ ଅଞ୍ଚଳ, ମାଳୟଦେଶ ଓ ପଲିନେସିଆର ଦ୍ୱୀପପୁଞ୍ଜର ବଶିଷ୍ଟ

ଦୃଶ୍ୟ । ଧାନଚାଷର ଏହି ଦୁଇଟି ମୁଖ୍ୟ ଅଙ୍ଗ—କ୍ଷେତ ଓ ପାଣି—ଉପରେ ଗୁରୁତ୍ୱପୂର୍ଣ୍ଣ ପ୍ରବାଦ ରହିଛି ।

୧—ଜଙ୍ଘ ମୁଠି, ଆଣ୍ଠୁ ଦମୁଠି
କିଆରି ମଝିରେ ପୋତିବୁ କାଠି
ବର୍ଷରେ ରହିବ ପାଣି ସମାନ
ପର୍ବତ ଶିଖରେ କରିବ ଧାନ
ଯେବେ ନୋହିବ ତହିଁରେ ଧାନ
ତେବେ କାଟିବ ତାକର କାନ

ଅର୍ଥ—ଧାନ କିଆରି ଆଡ଼ି (ହିଡ଼) ଉଚ୍ଚାରେ ନଅ ଇଞ୍ଚ, ଚଉଡ଼ାରେ ଅଠାଇଶି ହେବା ଦରକାର । କିଆରି ସମଚଉରସ ହେବ ଯେପରି କି ବର୍ଷକଣରେ ପାଣି ସମଭାବରେ ରହିବ । ଏପରି ଜମି ପର୍ବତ ଶିଖରେଥିଲେ ମଧ୍ୟ ତହିଁରେ ଧାନ ଫସଲ ହେବା ସୁନିଶ୍ଚିତ ।

୨—ଉଚ୍ଚ ହାତେ, ପ୍ରସ୍ଥ ହାତେ
ହିଡ଼ ବାନ୍ଧିବ ଘାସ ସହିତେ
ଚଷାଭାଇ ମାନରେ
ଯହିଁ ପାଣି ତହିଁ ଧାନ ରେ ॥

୩—ଛାଡ଼ିବୁ ଚଉଦ ଧରିବୁ ସୁର
କମାଣି କରିବୁ ବୁଷ କିଆରି
ବୁଣ ଖରୁଡ଼ି ପକା ଖତ
ହିଡ଼ ଖଣ୍ଡିକରେ ନ ଦେବୁ ହାତ
ଚଷାଭାଇ ମାନରେ; ଯହିଁ ପାଣି ତହିଁ ଧାନରେ ।

୪—ସରୁ ସରୁ 'କଆଶି' ବଡ଼ ବଡ଼ ଆର
ତହିଁ ବୁଣିବ ବାଙ୍କୁଆର

ଅର୍ଥ—ଧାନ କଆଶି ଲମ୍ବା ଲମ୍ବା ପଟିପରି ହେବା ଦରକାର । ପଟିର ଆଡ଼ ବଡ଼ ବଡ଼ ହେବା ଉଚିତ । ଏପରି କଆଶରେ ବାଙ୍କୁଆର ଧାନ ଭଲ ହୁଏ ।

୫ । ବାନ୍ଧ ଆଗେ ଆଳ, ରୁଅ ତେବେ 'ଶାଳ'
ନାହିଁ ଯବ ଫଳ ଫଳେ,
ଗାଳ ଦେବୁ ଖନା ବୋଲେ ।

୬ । ଚାଷ କରିଥିବ କାଣ୍ଡି,
ହାଡ଼ ଦେଇଥିବ ଦାଣ୍ଡି ।

---

## (୪) ବିହନ ଓ ବୁଣା ( Seed & Sowing )

ଭଲ ଫସଲ ଲାଗି ଖାଣ୍ଟି ବିହନ ଦରକାର । ଆବରା ଝାବରା ବିହନ ବୁଣିଲେ ଧାନକ୍ଷେତ ବାଳୁଙ୍ଗା ଏବଂ ଗହାଡ଼ିରେ ଭରିଯାଏ । ଗହାଡ଼ି ବାଳୁଙ୍ଗା କାଟିବା ବେଳେ ଧାନଗଛ କାଟି ଯାଆନ୍ତି । ଫଳ ଚଡ଼ିଆ ପଡ଼େ । ଖାଣ୍ଟି ଓ ଏକମସ୍ତୁ ବିହନର ଉତ୍ପାଦନ ଶକ୍ତି ପାଞ୍ଚକୋଳିଆ ଧାନ ବିହନ ଫଳିବା ଠାରୁ ଅତି ଅଧିକ । ଏଣୁ ଏକର ପ୍ରତି ଅଧିକ ଆମଦାନି ଲାଗି କୃଷୀ ଖାଣ୍ଟି ଓ ଏକମସ୍ତୁ ବିହନ ବୁଣିବା ଦରକାର । ବିହନ ପ୍ରତିବର୍ଷ ମିଶା ଧରିଯାଏ । ତେଣୁ ତିନି ବର୍ଷରେ ଥରେ ଧାନ ବିହନ ବଦଳାଇବା ଦରକାର ।

କୃଷିରେ ଉନ୍ନତ ଦେଶମାନଙ୍କରେ ଖାଣ୍ଟି ବିହନ ଯୋଗାଇବା ଲାଗି ସଂଗଠନମାନ ରହିଛି । ଏହି ସଂଗଠନ ପ୍ରଥମେ "ମୂଳଭିତ୍ତି

ବିହନ' (Foundation Seed) ଧରନ୍ତି । ଜନନପ୍ରକ୍ରିୟାରେ ବା ନିର୍ବାଚନ ସାହାଯ୍ୟରେ "ମୂଳଭିତ୍ତି" ସଂଗ୍ରହ କରାଯାଏ । ସରକାରୀ ଫାର୍ମରେ ଏହି "ମୂଳଭିତ୍ତି ବିହନ" ଚାଷ କରାଯାଏ । ତାଲିମପ୍ରାପ୍ତ କର୍ମଚାରୀଙ୍କର ତତ୍ତ୍ୱାବଧାନରେ ଫସଲ ତୋଳାଯାଏ ଏବଂ ବୀଜସଂଗ୍ରହ କରାଯାଏ । ଏହି ସଂଗୃହୀତ ନିରୋଳା ବିହନକୁ "ରେଜିଷ୍ଟର୍ଡ୍ ବିହନ" (Registered seed) କୁହାଯାଏ । ଏହି ରେଜିଷ୍ଟାର୍ଡ୍ ବା ଫାରମ ବିହନକୁ କେତେକ ମୁଖିଆ ଚାଷୀଙ୍କୁ ଦିଆଯାଏ । ଏହି ମୁଖିଆ ଚାଷୀ ନିଜ ତତ୍ତ୍ୱାବଧାନରେ ବିହନ ବୁଣି ବା ତଳି ପକାଇ ରୁଏ । ଧାନ ଥୋଡ଼ ଧରି ବାହାରିବା ସମୟରେ କ୍ଷେତରୁ ଘାସ, ବାଜୁଙ୍ଗା ଏବଂ ମିଶାଧାନ ଗଛ ବାଛି କାଟି ପକାଏ । ଧାନ ପାଚିଲେ କଞ୍ଚାବାଡ଼ିଆ କାଟି ଖଳା ଲିପି ଧାନ ମଳି ବିହନ ଧରେ । ବିହନ ଶୁଖା ଏବଂ ରଖା ପ୍ରତି ସାବଧାନ ରହେ । ଏହି ବିହନକୁ 'କ' ଶ୍ରେଣୀ ବା "ସାର୍ଟିଫାଏଡ୍ ବିହନ" (Certified Seed) କୁହାଯାଏ ।

କ ଶ୍ରେଣୀ ବିହନରେ ଶତକଡ଼ା ୯୫ଟି ଏକମସ୍ତ ଧାନ ଏବଂ ୫ଟି ମିଶାଧାନ ବା କଣ୍ଡା ରହିଥାଏ । ଏହି ବିହନ ପାଣିରେ ପକାଇଲେ ଶତକରା ୮୦ଟା ଗଜା ହୁଏ । ପ୍ରତି ୫୦୦ ଗ୍ରାମ ଓଜନ ବିହନରେ ୫ଟାରୁ ଅଧିକ ଧୂସ, ଅଗାଡ଼ି ବା ପାଳ ରହି ନ ଥାଏ । ଏହି ବିହନ ବୁଣା ହୋଇଥିବା ଫସଲ କ୍ଷେତର ପ୍ରତି ୨୫ ବର୍ଗ ମିଟର ଜମିରେ ଗୋଟାଏ ଘାସ ବା ମିଶା ଧାନ ଗଛ ଦେଖାଯାଏ ।

ଜାପାନ ଦେଶର ସରକାର ଏହି ମତରେ ଧାନ ବିହନ ସଂଗ୍ରହ କରି ବଣ୍ଟନ ବ୍ୟବସ୍ଥା କରିଛନ୍ତି । ଜାପାନର ଏକର ପ୍ରତି ଧାନ ଆମଦାନି ଆମ ଦେଶର ଗୁରୁ ଚାରିଗୁଣ ।

ନିଜେ ଭଲ ବିହନ ନିଜେ ଧରି ନ ପାରିଲେ ପଡ଼ୋଶୀ ଚାଷୀଠାରୁ ବା ଅନ୍ୟ ସ୍ଥାନରୁ ବିହନ ଆଣିବ । ଆଖପାଖ ଜମିରେ ଚାଷ ଧାନ ମଧ୍ୟରେ ପରସ୍ପରର ସଙ୍ଗମ ଘଟି ବର୍ଣ୍ଣଶଙ୍କର ଜନ୍ମେ । ତେଣୁ ତିନି ବର୍ଷରେ ବିହନ ଖରାପ ଧରିଯାଏ । ପ୍ରତି ତିନି ବର୍ଷରେ ଚାଷୀ ତାର ବିହନ ବଦଳାଇବା ଦରକାର । ଅନ୍ୟ ସ୍ଥାନରୁ ଆଣାଯିବା ବିହନ ସ୍ଥାନ ବାରି ଭଲ ଫଳ ଫଳେ । ଏଥିଲାଗି ପ୍ରବାଦ ଅଛି ।

ଦୂର ଦେଶରୁ ବୀଜ ଆଣି
ଲାଭ କଉଡ଼ି ବସେ ଗଣି ॥ (କଳାନ୍ତର,କଟକ)

ଅର୍ଥ—ଯେଉଁ ଚାଷୀ ଅନ୍ୟ ଜାଗାରୁ ବିହନ ଆଣି ବୁଣେ, ସେ ଭଲ ଫସଲ କାଟେ ଏବଂ ଲାଭ ପାଏ ।

## ଧାନବୁଣା ସମୟ—(Time of Sowing)

୧—ଜଗିବୁ ପଛକେ ଗ୍ଲେଟିଆ ଘର
ଆଗେଇ ଆଗେଇ ଫସଲ କର
ତେବେ ମିଳିବ ପଇସା
ମଠେଇ ମଠେଇ ଫସଲ କଲେ
ହେବୁ ପର ଲୋକ ହସା ॥ (ନନ୍ଦିକୂଳ, ବାମଣ୍ଡା)

୨—ସଂକ୍ରାନ୍ତି ପଣା, ଚାଷୀ ହେଲା ବଣା ॥

ଅର୍ଥ—ପଣା ସଂକ୍ରାନ୍ତି ପରେ ସେ ଧାନ, ମକ୍କା ଓ ଅନ୍ୟାନ୍ୟ ବର୍ଷାକାଳୀନ ଫସଲ ବୁଣିବା ଲାଗି ପାଗ ଚାହିଁ ବସିଥାଏ

୩—ଝିଙ୍କାରି ଗଛରେ କଲେଣି ସ୍ୱର
ଆରେ ଚଷା ଝାଇ ହୁଅ ତୁ ଖର ॥

## ବୁଣିବା ରୀତି—(System of Cultivation)

ଧାନ ତିନିଟି ପ୍ରକାରରେ ବୁଣାଯାଏ; ଯଥା (୧) ଖରୁଡ଼, (୨) ବତୁର ଏବଂ (୩) କାଦୁଅ ।

### ଖରୁଡ଼—(Dry Seedbed)

ପାଣି ମଡ଼ାଇ ଜମି ଚାଷ କରିବା ସୁବିଧା ନ ଥିବା ଅଞ୍ଚଳରେ ପୌଷ ମାସର ଧାନ ଫସଲ କଟାକଟି ପରେ ଜମି ଚାଷ ଆରମ୍ଭ ହୁଏ । ଜ୍ୟେଷ୍ଠ ମାସରେ ସାବିତ୍ରୀ ଅମାବସ୍ୟା ପରେ ବର୍ଷା ନ ହେବାରୁ ଧାନ ବୁଣାଯାଏ । ଜମି ଗୁଣ୍ଡ ଚାଷ ହୋଇଥାଏ । ଲଘୁ ଏବଂ ବଡ଼ ଧାନ ଉଭୟ ବୁଣି ମଡ଼େଇ ଦିଆଯାଏ । ମଇ ଦିଆଯାଏ ନାହିଁ । ଜମି ଶୁଖିଲା ଥିବାରୁ ହଳ ବଳଦଙ୍କୁ ବିଶେଷ ବାଧେ ନାହିଁ । ଦିନକୁ ଅଧ ଏକର ଜମି ବୁଣାଯାଇ ଗୋଟିଏ ହଳ ମଡ଼େଇ ଦେଇପାରେ ।

### ବତୁର—(Semi dry)

ରଜ ସଂକ୍ରାନ୍ତି ପୂର୍ବରୁ ବା ପରେ ଦୁମୁକାଣିଆ ବର୍ଷା ହୋଇଗଲେ ମାଟି ଅଧାକାଦୁଆ ଧରିଯାଏ । ଏହି ଅଧାକାଦୁଆ ପାଗରେ ଲଘୁ ଓ ବଡ଼ ଧାନ ବୁଣି ମଡ଼େଇ ଦିଆଯାଏ । ହଳୁଆ ବଳଦଙ୍କୁ ହଳ ଟାଣିବା କଷ୍ଟ ପଡ଼େ । ଦିନକରେ ପାଏ ଜମି ବୁଣି ମଡ଼େଇବା ଗୋଟିଏ ହଳ ପକ୍ଷରେ କଠିନ ହୁଏ ।

### କାଦୁଆ—(Wet Seedbed)

ଜମି ଖରଟିଆ ଚାଷ ହୋଇପାରି ନ ଥିଲେ ବର୍ଷା ଆସିବା ପରେ ଜମି ଚଷି କାଦୁଅ କରି ଦିଆଯାଏ । କାଜୁଅ ଧାନ ବୁଣିବା ଲାଗି ଜମିରୁ ପାଣି ନିଗାଡ଼ି କାଦୁଅ କରାଯାଏ । ଲହୁଣି ପରି

ମାଟିକୁ କାଦୁଅ କରି ମଇ ଘୋଷାରି ଦିଆଯାଏ । ଧାନ ବିହନ ଗଜାକରି ବା ବେଗର ଗଜାରେ ବୁଣି ଦିଆଯାଏ । ଏହାକୁ "ଅଛବ" କୁହାଯାଏ ।

ଏହି ତିନି ସ୍ତରରେ ଜମି ତିଆରି ଏବଂ ବିହନ ବୁଣା ମଧ୍ୟରେ ଖରୁଡ଼ି ଉତ୍କୃଷ୍ଟ । କିନ୍ତୁ ଡାଳୁଅ ଧାନ ଲାଗି ଅଛବ ଉତ୍କୃଷ୍ଟ । ଏହି ତିନୋଟି ସ୍ତରରେ ବୁଣା ନେଇ ବହୁତ ପ୍ରବାଦ ରହିଛି । ଯଥା:—

**ଖରୁଡ଼ି ବୁଣା—**

୧—ଖ୍ରିରଖାର ବୁଣ୍

( ଖରୁଡ଼, ଖରୁଡ଼ ଧାନ ବୁଣ )
କାହାରି କଥା ନ ଶୁଣ ।। (କଳନ୍ତର, କଟକ)
(କାହାର କଥା ନାହିଁ ଶୁଣ ) (ଟିଟିଲାଗଡ଼, ବଲାଙ୍ଗିର)

୨—ଖରଲି—ଧାନ ଶୁରଲି
ରୁପା—ଘର ଢେ଼ପା (ରୁପା—ରୁଆ, ରୋଇବା)
ବତର—ଗୃତର ।। (ମନମୁଣ୍ଡା, ବଉଦ)

୩ । ଜ୍ୟେଷ୍ଠାଳି ବୁଣା ବୋଲନ୍ତି ଖରୁଡ଼ି
ସେଥିରୁ ବଳିଲେ ଚଷା ଯାଏ ହୁଡ଼ି ।।

୪ । ଗୃଷ୍ଠ ପରେ ଯଦି ବର୍ଷା ଯାଗ ହୁଏ
ତାହାକୁ "ମାଛ ଖରୁଡ଼ି" ବୋଲୁଏ ।।

୫ । ଆଷାଢ଼ ମାସରେ "ମାଛଖରୁଡ଼ି"
ଭାଗ୍ୟ ଥିଲେ ପାଇ
ଏଣ୍ଟୁ, ମେଣ୍ଟୁ କରି ଯଦି ବୁଣିଥିବୁ
ବସି ହସି କରି ଦାଇ ।। (ଦାଇ-ଫସଲକାଟିବା)

୬ । ଆଷାଢ଼ ମାସରେ ଖରୁଡ଼ ପାଗ
ଅତି ଭାଗ୍ୟରେ ପାଇ
ବୁଣିଥିବୁ ପଦ୍ଧ ବାଲିଆ ମୁଗୁଦ
ସୁଖରେ କାଟିବୁ ଯାଇଁ ।

୭ । ଆଷାଢ଼ ମାସରେ "ମାଣ୍ଡି ଖରୁଡ଼"
ଭାଗ୍ୟେ ଥିଲେ ପାଇ
ଠିଆ ହୋଇ ବୁଣିଥିଲେ
ବସି କରି ଖାଇ ।। (ସମ୍ବଲପୁର)
( ବସି ଖାଉଥିବୁ ଭୁଞ୍ଜି ) । (କଳମ୍ବର, କଟକ )

## ଧାନ ଅଛର୍ ପକାଇବା

୧ । ଧାନ ନାହିଁ କର ଅଛର
ନାହିଁ ନୋଛିବା ହେବ କଚର । (ସଇଁତଲା, ବଲାଙ୍ଗିର)
ଅର୍ଥ—ଅଛର ଧାନରେ କଚର ବା ଘାସ ଅଧିକ ହୁଏ ।

୨ । ଯେ କରେ ଅଛର
ତାର ଘରେ ଡାକ୍‌ଚର ।।

## ବଆଳି ଧାନ ବିଦା ଦେବା—

ବଆଳି ଧାନ ବତୁରି ପାଗରେ ବୁଣାଯାଏ । ରଜ ପୂର୍ବରୁ ବା ପରେ ବର୍ଷା ଦୁଇ ତିନି ଅସର ହେବା ପରେ ଢିପା ଜମିକୁ ଚାଷ କରି ମଇ ଦେଇ ମାଟି ଗୁଣ୍ଡ କରାଯାଏ । ବଆଳି ଧାନ ବୁଣି ମେଣ୍ଡେଇ ଦେଇ ମଇ ଦିଆଯାଏ । ଏହା ପରେ ଗୁଡ଼ା "ବତୁରି କାଳ" ବା ଓଡ଼େ ଚାଷ କରି ମଇ ଦିଆଯାଏ । ବତୁରିକାଳ ହେବାଦ୍ୱାରା ମୁଥାଗୁଳା ଏବଂ ଶୁଆଁ ଓ କୋଦୁଅ ଘାସ ମରିଯାଏ । ଯାହାକଠୁ

ଗୁଣ୍ଡି ଘାସ ରହିଥାଏ । ବଉଳ ଧାନ ଉଠିସିବାର ସପ୍ତାହକ ପରେ "ଗରମଇ" ଏବଂ "ବତା" ଦିଆଯାଏ । ଗୁଣ୍ଡି ଘାସ ଉପୁଡ଼ି ଯାଏ । ଧାନ ବଢ଼ନ୍ତିଆ ଗଛ ଭାଙ୍ଗି ଚାଉଳ ଧରିଯାଏ ।



ଚିତ୍ର— ଧାନ ୩-୪ ପତ୍ର ହେଲେ ବଢ଼ ହେବ ।

ଧାନବୁଣା, ରୁଆ, କଟା ଏବଂ ଉଡା ହେବା ଲାଗି ନିର୍ଦ୍ଦିଷ୍ଟ ଦିନ ରହିଛି । ଯଥା—

୧ । ବୁଧେ ରୋଇ, ଶୁକ୍ରେ କାଟି
ଶନି ମଙ୍ଗଳେ ଖେତ ବଦାଇ ॥

ଅର୍ଥ--ବୁଧବାର ଧାନ ରୁଆ, ଶୁକ୍ରବାର ଧାନକଟା ଏବଂ ଶନି ଓ ମଙ୍ଗଳବାର ଧାନ ବଦାଇବା ଆରମ୍ଭ କରିବ ।

**ଜମି ଚିରଦା କରିବା (Puddling for transplanting )**

ମାଟିକୁ ବୃଷ୍ଟିକରି ମଇ ଦେଇ ଲଙ୍ଗଳ ଦ୍ୱାରା କାଦୁଅ କରାଯାଏ । ଏହି କାଦୁଅ କରିବାକୁ "ଚିରଦା" କୁହାଯାଏ । ଜମି ଲଙ୍ଗଳି

ପର ନ ହେଲେ ବୋଇବା କଷ୍ଟକର ହୁଏ । ଚଳ ମାଟି ଭିତରେ ପଶେ ନାହିଁ । ଅଧିକାଂଶ ଭାସି ଉଠେ । ମାଟି ଲହୁଣି ପର କରିବା ଲଗି ଖରଚିଆ ଚଷ ଭଲ । ଖରାଦିନରେ ଢେଲା ଶୁଖି ରହୁଥାଏ । ବର୍ଷା ପଡ଼ିଲେ ଢେଲା ଫାଟିଯାଏ । କାଦୁଅ କରିବା ସହଜ ହୁଏ । ଖରଚିଆ ଚଷ ନ କରାଯାଇଥିଲେ ବର୍ଷା ପଡ଼ିଲେ କାଦୁଅ କରିବାକୁ "କଞ୍ଚା ଚଷ" କୁହାଯାଏ । ମାଟି ଚଷି, ସଢ଼େଇ କାଦୁଅ କରିବା ଏଥିଲଗି ପ୍ରବାଦ ଅଛି

"ଶଗୁରା ହାତେ ଦେବୁ ଲଙ୍ଗଳ
ସେ ଯେତେ ଦଳିବ ତେତେ ମଙ୍ଗଳ"

## ଧାନରୁଆ

ପରାଶରଙ୍କ ମତରେ

ବପନଂ ରୋପଣଞ୍ଚୈବ ବୀଜଂ ସ୍ୟାଦୁଭୟାତ୍ମକମ୍
ବପନଂ ଗଦନିର୍ମୁକ୍ତଂ ରୋପଣଂ ସଗଦଂ ବଦୁଃ ॥

ଅର୍ଥ—ବୀଜ ଦୁଇ ପ୍ରକାର, ଯଥା:—ବପନ ବୀଜ ଏବଂ ରୋପଣ ବୀଜ । ବପନ ବୀଜ ରୋଗଶୂନ୍ୟ ଏବଂ ରୋପଣ ବୀଜ ରୋଗଯୁକ୍ତ ହୁଏ ।

ଖନାଙ୍କ ମତରେ

ରୁଆ, ଧାନ ଥୁଆ

ରୁଆ ଲଗି ଚଳ (Seedlings for transplantation)

ରୋଇବା ଲଗି ଚଳ ଗଜା ବା ବୁଢ଼ା ହୋଇ ନ ଥିବା ଧାନଗଛର ଜୀବନ ସହିତ ଚଳର ଜୀବମାର ଏକ ଅନୁପାତ ରହିଛି । ଧାନ ଚାରି ମାସରେ କଟା ଯାଉଥିଲେ ଚଳ ଚଳମୁଣ୍ଡାରେ

ଘୃରସପ୍ତାହ ରହିବା ଉଚିତ । ଧାନ ପାଞ୍ଚ ମାସରେ କଟାଯାଉଥିଲେ ଚାଳ ଚାଳମୁଣ୍ଡାରେ ପାଞ୍ଚ ସପ୍ତାହ ରହିବା ଦରକାର ।

ପରାଶରଙ୍କ ମତରେ

ନ ବୃଷରୂପ ଧାନ୍ୟାନାଂ ବୀଜାକର୍ଷଣ ମାଚରେତ୍
ନ ଫଳନ୍ତି ଦୃଢ଼ାବୀଜା ବୃକ୍ଷାଃ କେଦାର ସଂସ୍ଥିତାଃ ॥

ଅର୍ଥ ଧାନଗଛ ଗ୍ଭେନ ଥିବା ବେଳେ ରୋଇବ । ଗଛ ରୂପରେ ପରିଣତ ହେଲେ ରୋଇବ ନାହିଁ । ଧାନଗଛ ବୁଢ଼ାହେବା ଅବସ୍ଥାରେ ରୋଇଲେ ତାହା ଫଳପ୍ରଦ ହୁଏ ନାହିଁ ।

ଧାନ ରୋଇବା ଲାଗି ମୃଗଶିରା ନକ୍ଷତ୍ରରେ ତଳି ପକାଇବ ।

## ଧାନ ରୋଇବା ସମୟ—(Time of Transplanting)

ଧାନ ରୋଇବା ନିମନ୍ତେ ନିର୍ଦ୍ଦିଷ୍ଟ ସମୟ ରହିଛି । ଏହି ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ବା ପରେ ରୁଆଗଲେ ଧାନ ଆମଦାନି ଊଣା ଘଟେ । ରୁଆର ନିର୍ଦ୍ଦିଷ୍ଟକାଳ ପୂର୍ବରୁ ରୋଇଲେ ଷୋଳଅଣା ଫସଲ କଟାଯିବାର ଆଶା ରହେ ।

ଧାନ ରୁଆ ସମୟ ନେଇ କଟକ ଧାନ ଗବେଷଣା କେନ୍ଦ୍ରରେ ଏକ ପରୀକ୍ଷା କରାଯାଇଥିଲା । ସେହି ପରୀକ୍ଷା ଫଳ, ୧୧ ନମ୍ବର ଟେବୁଲରେ ଦିଆଯାଉଛି ।

ଏହି ପରୀକ୍ଷାରୁ ବୁଝାଯାଉଛି ଯେ ଲଘୁଧାନ ଅଗଷ୍ଟ ୯ ତାରିଖ ପରେ ଏବଂ ବଡ଼ ଧାନ ୨୪ ଅଗଷ୍ଟ ପରେ ରୋଇଲେ ଧାନ ଏବଂ ନଡ଼ା ଆମଦାନୀ କମିଯିବ । ଏହି ରୁଆ ସମୟ ନେଇ ବହୁତ ପ୍ରବାଦ ରହିଛି ।

## ଟେବୁଲ ୧୧— ରୋଇବା ସମୟର ଧାନ ଆମଦାନି ଉପରେ ପ୍ରଭାବ (ମାଉଣ୍ଡ ମାପରେ)

| ଲଘୁଧାନ (୧୨୪୫ ନମ୍ବର) | | ବେଗର ଖତ | | ଖତସାର | |
|---|---|---|---|---|---|
| ରୁଆ ଯିବା ତାରିଖ | କେତେ ଦିନର ଚାରା | ଧାନ | ନଡ଼ା | ଧାନ | ନଡ଼ା |
| ୨୦ ଜୁଲାଇ | ୩୦ ଦିନ | ୧୫୭୮ | ୪୭୮୨ | ୧୮୬୭ | ୫୬୫୨ |
| | ୪୦ ଦିନ | ୧୫୦୩ | ୫୦୦ | ୧୬୮୮ | ୫୬୫୨ |
| ୩୦ ଜୁଲାଇ | ୩୦ ଦିନ | ୧୫୭୧ | [illegible]୮୯୧ | ୧୮୨୧ | ୫୪୫୬ |
| | ୪୦ ଦିନ | ୧୭୫୬ | ୫୬୫୨ | ୧୭୬୪ | ୫୨୧୭ |
| ୯ ଅଗଷ୍ଟ | ୩୦ ଦିନ | ୧୬୭୧ | ୪୭୨୮ | ୧୭୧୦ | ୪୫୧୦ |
| | ୪୦ ଦିନ | ୧୭୬୦ | ୪୫୧୨ | ୧୭୫୪ | ୪୪୫୬ |
| ୧୯ ଅଗଷ୍ଟ | ୩୦ ଦିନ | ୧୫୯[illegible] | ୫[illegible]୫୪ | ୧[illegible]୧୦ | ୪୮୯୧ |
| | ୪୦ ଦିନ | ୧୫୨୭ | ୫୩୨୬ | ୧୯୪୮ | ୫୭୦୬ |
| ୨୯ ଅଗଷ୍ଟ | ୩୦ ଦିନ | ୧୨୯୯ | ୩[illegible]୦୪ | ୧୨୨[illegible] | ୩୨୨୩ |
| | ୪୦ ଦିନ | ୧୩୫୯ | ୪୧୮୪ | ୧୩୦୨ | ୪୦୨୧ |

| ବଡ଼ଧାନ (୯୦ ନମ୍ବର) | | ବେଗର ଖତରେ | | ଖତସାର ଦେଇ | |
|---|---|---|---|---|---|
| ରୁଆ ତାରିଖ | କେତେ ଦିନର ଚାରା | ଧାନ | ନଡ଼ା | ନଡ଼ା | ଧାନ |
| ୨୫ ଜୁଲାଇ | ୩୫ | ୨୧୧୨ | ୪୬୮୨ | ୨୧୯୯ | ୫୪୦୭ |
| | ୪୫ | ୨[illegible]୮୨ | ୪୬୧୯ | ୨୨୭୪ | [illegible]୦୫୪ |
| ୯ ଅଗଷ୍ଟ | ୩୫ | ୧୮୪୨ | ୩୪୫୧ | ୨୩୬୧ | ୪୫୯୮ |
| | ୪୫ | ୨୦୦୩ | ୩୮୮୫ | ୨୨୧୭ | ୪୮୩୭ |
| ୨୪ ଅଗଷ୍ଟ | ୩୫ | ୧୮୫୬ | ୨[illegible]୧୭ | ୨୧୫୦ | ୨୯୩୪ |
| | ୪୫ | [illegible]୭୫୨ | ୨୭୧୭ | ୨୧୭୧ | ୩୬୩୮ |
| ୮ ସେପ୍ଟେମ୍ବର | ୩୫ | ୧୬୪୭ | ୨୬୩୫ | ୨୦୨୫ | ୩୦୯୭ |
| | ୪୫ | ୧୭୧୨ | ୨୧[illegible]୬ | ୨୦୬୩ | ୨୭୧୭ |
| ୨୩ ସେପ୍ଟେମ୍ବର | ୩୫ | ୧୬୦[illegible] | ୧୨୭୭ | ୧୬୪୬ | ୧୪୧୩ |
| | ୪୫ | ୧୬୭୫ | ୧୪୭୭ | ୧୮୪୧ | ୧୯୫୬ |

୧ । ଆଷାଢ଼ ପାଞ୍ଚଦିନ
ଯେ ଚଷା ବୋଇବ ଧାନ
ଭୋଗିବ ଅପାର ସୁଖ
ନ ଛୁଇଁବ ତାରେ ଦୁଃଖ ॥

୨ । ଆଷାଢ଼େ ବୋଏ କ୍ଷେତକୁ
ଶ୍ରାବଣେ ବୋଏ ପାଟକୁ ॥

୩ । ଆଷାଢ଼େ ବୋଇଲେ ଦଳକେ
ଶ୍ରାବଣେ ବୋଇଲେ ଫଳକେ
ଭାଦ୍ରବେ ବୋଇଲେ ଭୁଷକେ
ଆଶ୍ୱିନେ ବୋଇଲେ ବିଷକେ ॥

୪ । ଅଇଲରେ ଢେଙ୍କା ଶ୍ରାବଣ
ଭାଦ୍ରବ ତରଣ ଦିନ
ଅଶିଣ ମାସରେ ଗହଳା ଗହଳ
କାର୍ତ୍ତିକରେ ଯେ ପାଇବ ଦିନ ॥

୫ । ଶ୍ରାବଣ ଆଦ୍ୟରୁ ଭାଦ୍ର ବାର ଦିନ ଯାଏ
ରଖିଥିବ ଏ ଦିନକୁ କୃଷକ ହୃଦୟେ
ଏ ସମୟେ ଶୁଭାଶୁଭ କିଛି ନ ଭାବିବ
ଯେତେ ଇଚ୍ଛା ହେବ ଶସ୍ୟ ରୋପଣ କରିବ
ଲାଭ ହୋଇବ ପ୍ରଚୁର ଶସ୍ୟ ଅକ୍ଲେଶରେ
ସୁଖ ଭୋଗ କରିବ ପରମ ଆନନ୍ଦରେ ॥

(ବାଲିଡିହା, ମୟୂରଭଞ୍ଜ)

୧ । ଶ୍ରାବଣ ପୂରବ, ଭାଦ୍ରବ ବାରେ
ଏଥିମଧ୍ୟେ ଯେତ ରୁଏ ପାରେ ॥

୭ । ଶ୍ରାବଣ ମାସରେ ତିଶଦିନ ଯାକ, କୃଷକେ ବୋଇବ ଧାନ
ପୁଣି ଭାଦ୍ରବରେ ତେରଦିନ ଯାଏ, ଚତୁରେ କର ଅନୁମାନ
ଏହାପରେ ଆଉ ରୋପଣ କରିଲେ ସୁଫଳପାଇବ ନାହିଁ
ଜ୍ୟୋତିଷ ମତରେ ବରାହଙ୍କ ବଧୂ ଖନା ଯାଇଛନ୍ତି କହି

( ପାଟଣାଗଡ଼, ବଲାଙ୍ଗିର )

୮ । ସିଂହ ତେରଦିନ ଉତ୍ତମରୁଆ ପାଞ୍ଚ
ଗାଁର ଖାରି, କଟାର ପାଣି, ଆଉ ରୁଆପାଞ୍ଚ
ହିଁ ହିଁ ଖିଟା, ଦାନ୍ତମକୁଟା, ଆଉର ରୁଆ ପାଞ୍ଚ
ଘୋଡ଼ା ମୁହିଁକୁ, ଭଙ୍ଗଲ ଚେକା, ଆଉରରୁଆ ପାଞ୍ଚ

୯ । ସିଂହ ତେର ରୁଆ , ଉତ୍ତମରୁଆ
ତହିଁରୁ ବଳିଲେ ଦଶ
ଗ୍ରାମ ବାଡ଼ତଳେ ଖଟାଡ଼ ମଟାଡ଼
ଆଉ ଦଶଦିନ ଖସ ।। (ବାଲୁଗାଁ , ପୁରୀ)

୧୦ । ଭାଦୁଅ ମାସର ରୁଆ କରକୁ
ବୁଡ଼ାକାଳେ ପୁଅ ଘରକୁ ।। (ବେତନଟି, ମୟୂରଭଞ୍ଜ)

୧୧ । ତୂଳରେ ବୋଇଲେ ମୂଳରେ ଫଳେ

ଅର୍ଥ— କାର୍ତ୍ତିକ ମାସ ତୂଳ ମାସ । କାର୍ତ୍ତିକ ମାସରେ ଧାନ ବୋଇଲେ ଗଛ ବଢିବାକୁ ସମୟ ନଥାଏ । ସାଙ୍ଗେ ସାଙ୍ଗେ ଧାନ ବାହାରି ପଡ଼େ । ଦୁଇ ତିନି ଆଙ୍ଗୁଳି ଲମ୍ବ କେଣ୍ଡାଟି ମାନ ନଇଁପଡ଼େ । ତେଣୁ ଯେତିକ ଓଜନର ଡଳି ବୋଇଥିବ ସେତିକ ଓଜନର ଧାନ ଫଳିବ । ଧାନ ମୂଳେ ମୂଳେ ମିଳିବ । ସୁଧ ବା ଲାଭ ମିଳିବ ନାହିଁ ।

୧୨ । ଜନ୍ମକୁ ବୋଇଲେ କର୍ମକୁ

ଅର୍ଥ—ଜନ୍ମାଷ୍ଟମୀ ଭାଦ୍ରବମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି । ଏହି ସମୟରେ ବୁଇଲେ ଧାନ ପିଲମାନ ଭେଳା ବାନ୍ଧେ ନାହିଁ । ତେଣୁ ଆମଦାନି କମିଯାଏ ।

## ତଳି କେତେ ଛଡ଼ାରେ ବୁଇବ (Spacing)

ଧାନ ଯେତେ ଆଗଭୁଆ ହେଇବ ତେତେ ଗଣ୍ଡ ପିଲ ମାନ ଭେଳା ବାନ୍ଧିବ । ରୁଆ ଡେରି ହେଲେ ପିଲ ବାହାରେ ନାହିଁ; ତେଣୁ ବୁଦା ଶ୍ରେଷ୍ଠ ଧରେ । ଆଗରୁଆ ଛଡ଼ା ଛଡ଼ା କରି ଏବଂ ପଛୁଆଣି ରୁଆ ଲଗେଇ ଲଗେଇ ବୁଇବ । ଆଗରୁଆ ୬″ × ୯″, ପଛରୁଆ ୬″ × ୬″ ବା ୩″ × ୬″ ବ୍ୟବଧାନରେ ବୁଇବ ।

ଖନାଙ୍କ ମତରେ:—

୧ - ମିଥୁନେ ଛଡା, କକଡ଼ା ହଡା, ସିଂହ ଚଉକା
କନ୍ୟେ ନାଧଅ ରେ’
ତୁଳ ମାସରେ ପାଣି ବରଷିଲେ
ସବୁ ସମତଳ ହୋ’
ଆଜ ଯେତେ ବୁଇ ନ ପାରିବ
ବଳଦ ଆଗରେ ଥୋ’

୨ । କକଡା ହଡା, ସିଂହ ଚଉଠା, କନ୍ୟେ ନାଧଅ ରେ’
ତୁଳ ମାସରେ ପହ୍ନା ନ ବେପିଲେ, ବଡ଼ା ବଡ଼ା କରି ଥୋ’ „

୩ । କୋଳ ପତଳା, ମୋଟା ଗୋଛି
ଲକ୍ଷ୍ମୀ ବୋଲନ୍ତି ମୁ ସେଇଠି ଅଛି ।।

## ପରାଶରଙ୍କ ମତରେ

ହସ୍ତାନ୍ତରଂ କର୍କଟେଚ ସିଂହେ ହସ୍ତାର୍ଦ୍ଧମେବଚ
ରୋପଣଂ ସର୍ବଧାନ୍ୟାନାଂ କନ୍ୟାସ୍ୱାଂ ଚତୁରଙ୍ଗୁଳ ॥

ଅର୍ଥ— ଶ୍ରାବଣ ମାସରେ ଏକ ହାତ ଅନ୍ତରରେ, ଭାଦ୍ରବ ମାସରେ ଅଧ ହାତ ଅନ୍ତରରେ ଏବଂ ଆଶ୍ୱିନରେ ଚାରି ଆଙ୍ଗୁଳ ଅନ୍ତରରେ ରୋଇବ ।

## ଚାରା ଉପାଡ଼ିବାର କେତେ ସମୟ ପରେ ରୋଇବ

ଚାରା ଉପାଡ଼ି ଚେରରୁ କାଦୁଅ ପରିଷ୍କାର ଭାବରେ ଧୋଇବା ଦିନେ ଦୁଇଦିନ ମଧ୍ୟରେ ଚାରା ରୋଇବ । ବିଳମ୍ବ କଲେ ଚାରା ପାଚିଯାଏ, ଚେର ବାହାରି ମରି ଯାଏ । ପରୀକ୍ଷାଫଳ ଦିଆଗଲା ।

## ଚାରା ଉପଡ଼ା ଏବଂ ରୁଆର ଆମଦାନୀର ଉପରେ ପ୍ରଭାବ

| ଉପଡ଼ା ଓ ରୁଆଦିନ | ଏକର ପ୍ରତି ଧାନ ଆମଦାନି |
|---|---|
| ଉପଡ଼ାଦିନ ରୁଆ | ୧,୭୨୧ ପାଉଣ୍ଡ |
| ଉପଡ଼ା ବାସି | ୧,୬୪୬ ,, |
| ଉପଡ଼ା ତିଆସି | ୧,୫୫୧ ,, |
| ,, ଚଉଠି | ୧,୨୦୩ ,, |

## ବେଉଷଣ ବା ବିହୁଡ଼ା (Beushaning of paddy)

ଝୁରୁଡ଼ି ଓ ବତୁରି ବୁଣା ଧାନ ବହଳ ବୁଣାଯାଇଥାଏ । ମାସକ ପରେ କ୍ଷେତରେ ପାଣି ଲଗିଲେ ଧାନ ବିହୁଡ଼ାଯାଏ । ବିହୁଡ଼ିବା ଦ୍ୱାରା

୧ । ଧାନଗଛ ପତଳା ହୋଇଯାଏ
୨ । ଧାନ ପତଳା ହେବାରୁ ପିଲମାର ବୁଦାଧରେ
୩ । ଚେର ଛିଡ଼ି ନୂଆଚେର ବାହାରେ
୪ । ନଣ୍ଡା କମି ଧାନ ଭାଗ ବଢ଼େ
୫ । ଶୁଅଁ ଓ ଘାସ ପଟା ସବୁଜସାର ହୁଏ; କ୍ଷେତ ନିର୍ମଳ ରହେ ।

ଗଜା ବୁଆ ବଦ୍ଧଡ଼ିବ । ବୁଆ ଗଣ୍ଡି ଗୁଡ଼ଗଡ଼ିଲ ବଦ୍ଧଡ଼ିବ ବେଳେ ଓ ମଇଦେବା ବେଳେ ଭାଙ୍ଗିଯାଏ ।

୧ । ଗୁଣ୍ଡିଗୁ ବାହୁଡ଼ା ମଧ୍ୟରେ ପାଣି
ଗୋଜ ଲଙ୍ଗଳକୁ ଖୋଜକୁ ପୁଣି ॥
୨ । ବୁଣା ବେଉଷାକୁ ଥିବୁ ତୁ ଗୁହିଁ
ଲଙ୍ଗଳ ମୁନକୁ ଦେବୁ ତୁ ଡେଇଁ ॥
୩ । ଶତୃ ଲଗାଇ ବଦ୍ଧଡ଼ିବ
ବାପ ପୁଅ ମିଶି ଛିଡ଼ାଇବ
ଚଲ ପାଣି ବଲରେ ମଡ଼ାଇବ
ଭାଦ୍ରବ ମାସରେ ଧାନ କୁଣାଇବ ॥

## ଧାନବଛା ବା ଅପଧାନ ନିସ୍ତୃଣୀକରଣ (Weeding of paddy)

ପରାଶରଙ୍କ ମତରେ:—

ନିଷ୍ପନ୍ନମପି ସଦ୍ଧାନଂ ଅକୃତ୍ୱା ତୃଣବର୍ଜ୍ଜିତଂ
ନମସ୍ୟକ୍ ଫଳମାପ୍ନୋତି ତୃଣକ୍ଷୀଣ କୃଷିର୍ଭବେତ ॥

ଅର୍ଥ—ବେଇକା ପରେ ଧାନ ନିସ୍ପୃଣ ଅର୍ଥାତ୍ ନ ବାଛୁଲେ ଘାସରେ ଧାନଗଛ କ୍ଷୀଣ ହୋଇଯାଏ । ତେଣୁ ଭଲ ଫଳ ହୁଏ ନାହିଁ ।

କୁଳୀର ଭଦ୍ରୟୋ ମଧ୍ୟେ ଯଦ୍ଧାନ୍ୟଂ ନିସ୍ତୃଣ ଭବେତ୍
ତୃଣୈରପିଚ୍ଛୁ ସମ୍ପୂର୍ଣ୍ଣଂ ତଦ୍ଧାନ୍ୟଂ ଦ୍ୱିଗୁଣ ଭବେତ୍ ॥

ଅର୍ଥ—ଶ୍ରାବଣ ଓ ଭାଦ୍ରବ ମାସରେ ବାଛିଲା ପରେ ପୁନର୍ବାର ଘାସ ପୂର୍ଣ୍ଣ ହେଲେ ସୁଦ୍ଧା ତାହା ଦ୍ୱିଗୁଣ ଫଳ ହୁଏ ।

ଦ୍ୱିବାରମାଶ୍ୱିନେ ମାସି କୃତା ଧାନ୍ୟନ୍ତୁ ନିସ୍ତୃଣଂ
ଅଥପାକ ବହ୍ନାନଂ ହ୍ନି ଧାନ୍ୟଂ ଫଳନ୍ତି ମାସବତ୍ ॥

ଅର୍ଥ— ଆଶ୍ୱିନ ମାସରେ ଦୁଇବାର ବାଛୁଲେ ବଶପଶ ଧାନ ପ୍ରଚୁର ହୁଏ ।

ତସ୍ମାତ୍ ସର୍ବପ୍ରଯତ୍ନେନ ନିସ୍ତୃଣା କାରୟେତ୍ କୃଷିଂ
ନିସ୍ତୃଣାହ୍ନି କୃଷାଣାନାଂ କୃଷିଃ କାମଦୁଘା ଭବେତ୍

ଅର୍ଥ— ଧାନ ଉତ୍ତମରୂପେ ବାଛିବା ନିସ୍ତୃଣ କୃଷି କୃଷକର କାମ ଦୁଘା ହୁଏ ଅର୍ଥାତ୍ ଯଥା ସମୟରେ ବଛାଇଲେ ପ୍ରଚୁର ଫଳ ଲଭ ହୁଏ ।

ଖନାଙ୍କ ମତରେ:—

୧—ବଛା ସାର, ବାଛୁ ନ ପାରିଲେ ମୂଳ ଉପାଡ଼ ।୧।
ତୂଳରେ ବାଛୁଲେ, ମୂଳରେ ମିଳେ ।୨।

ଅର୍ଥ—ତୂଳ ମାସ ହେଉଛି କାର୍ତ୍ତିକ ମାସ । କାର୍ତ୍ତିକ ମାସରେ ଧାନ ଥୋର ହୁଏ । ତେଣୁ ଏତେ ବଳମ୍ବ ବଛା ମଧ୍ୟ ଉପକାର ହୁଏ ।

୨—ଫଗୁଣ ଗୁଣ୍ଡି, ଖେଦୁଅ ଖଣ୍ଡି
ଆଶ୍ୱିନେ କ'ନେ କାନ୍ ।
ଚଷା ବୋଲେ ସ୍ତ୍ରୀ ଲୋ କାହିଁ ରଖିବୁ ଧାନ୍ ।୪।

୩—ଶନ୍ ଲଗାଇ ବଢ଼ାଇବ, ବାପ ପୁଅ ମିଶି ଛୁଡ଼ାଇବ ।
ଖଲ ପାଣି ଖଲେ ମଡ଼ାଇବ,
ଭାଦ୍ରବ ମାସରେ ଧାନ ଶୁଖାଇବ ।

୪—ଧାନ କିଆରିରୁ ବାଛିବ ଘାସ
ବାଲୁଙ୍ଗା ଉପାଡ଼ି କରିବୁ ଶେଷ । ୦ ।
( ବାଲୁଙ୍ଗା, ପୁରୀ )

## ଧାନ କିଆରୀରେ ପାଣିର ଗୁରୁତ୍ୱ—

ପରାଶରଙ୍କ ମତରେ ଧାନ କ୍ଷେତରୁ ଜଳମୋଚନ ବିଧି . .

### ଭାଦ୍ରବ ମାସରେ

ନୈରୁଜ୍ୟାର୍ଥଂ ହି ଧାନ୍ୟାନାଂ ଜଳଂ ଭାଦ୍ରେ ବିମୋଚୟେତେ
ମୂଳ ମାତ୍ରନ୍ତୁ ସଂସ୍ଥାପ୍ୟ କାରୟେତ୍ ଜଳ ମୋକ୍ଷଣଂ ।।

ଅର୍ଥ—ଧାନରେ କୌଣସି ରୋଗ ନହେବା ପାଇଁ ଭାଦ୍ର ମାସରେ ଧାନମୂଳ ବୁଡ଼ିବା ଭଳି ପାଣି ରଖି ବଳକା ପାଣି କାଟି ଦେବ ।

ଭାଦ୍ରେ ଚ ଜଳ ସମ୍ପୂର୍ଣ୍ଣଂ ଧାନ୍ୟ ରୋଗ ବାଧକୈଂ
ପ୍ରପୀଡ଼ିତଂ କୃଷଣାନାଂ ନ ଧତ୍ତେ ଫଳମୁତ୍ତମଂ ।।

ଭାଦ୍ରବ ମାସରେ ଜଳପୂର୍ଣ୍ଣ ରହିଲେ ଧାନ ନାନା ପୀଡ଼ାରେ ଆକ୍ରାନ୍ତ ହୁଏ । ଶସ୍ୟ ମଧ୍ୟ ଭଲରୂପେ ଜନ୍ମେ ନାହିଁ ।

